ସମୁଦ୍ର ବକ୍ଷସ୍ଥ ବାହାର ଲକ୍ଷ ଲକ୍ଷ ଦେଶରେ ଯେ ସବୁ ସରକାର ଅଛନ୍ତି ସେ ସୁଦ୍ଧା ମଧ୍ୟ ସ୍ୱତନ୍ତ୍ର । ଅତଏବ ଯେ ନିର୍ବାଚନ ହେଉଛି, ସେ ବି ସ୍ୱତନ୍ତ୍ର । 'ବିନୋବା'

ସମାଜ, ୨୭।୧୨।୫୪

ଆମଦେଶ ଏକ ଗରିବ ଦେଶ । ଦରିଦ୍ରତା ଦୂର ନକଲେ ଆମେ ଅଗ୍ରଗତି କରିପାରିବା ନାହିଁ । ଆମକୁ ଆମର ସମସ୍ତ ଦାୟିତ୍ୱ ତୁଲାଇବାକୁ ହେବ । କେହି ଏକାକୀ ଏ ଦାୟିତ୍ୱ ତୁଲାଇ ପାରିବା ଅସମ୍ଭବ । ଆମକୁ ନିଜ ଦେଶର ଶକ୍ତି ବଢ଼ାଇବାକୁ ହେବ ଏବଂ ନିଜର ଶକ୍ତି ଉପରେ ବିଶ୍ୱାସ କରିବାକୁ ହେବ ।

୧୧।୧୨।୫୪ କଟକ

ଜବାହର ଲାଲ୍

ପ୍ରଥମ ସଂସ୍କରଣ

ମୂଲ୍ୟ [illegible] ମାତ୍ର

ପ୍ରକାଶକ—

ପ୍ରେମସୁନ୍ଦର ସ୍ମୃତି ପାଠାଗାର

ନରସିଂହପୁର, କଟକ । ୧୯୫୫

Printed by B. K. Kar, B. A.,

at the Saraswata Press, Cuttack—1955.

# ଅନ୍ଧାରି ମୁଲକ

ଆମର ଏଇ ଓଡ଼ିଶା ପୃଥ୍ୱୀରେ ଗଲା ସାତ ବର୍ଷ ତଳେ ଗାଁ ଗାଁରେ ଅଳ୍ପ ଅଧିକେ 'ମହାତ୍ମା ଗାନ୍ଧୀକି ଜୟ', 'ଇନ୍ କ୍ଲାବ୍ ଜିନ୍ଦାବାଦ୍', ଭାରତ ମାତାକି ଜୟ, ଏପରି କେତେ ଧ୍ୱନି ଶୁଭୁଥିଲା । କ୍ରମେ କ୍ରମେ ସେ ଧ୍ୱନିର ତେଜ କମିଗଲା । ସେଇ ଧ୍ୱନି ଶୁଭୁଥିବା ବେଳେ ମଣିଷଟା ଟିକିଏ ନିଜକୁ ମଣିଷ ପରି ମନେ କରୁଥିଲା ।

ସେତେବେଳେ ଆଶା ହୋଇଥିଲା ଏଇ ମଣିଷର ଖାଇବା, ପିନ୍ଧିବା, ରହିବା, ବୁଲିବା—ଏଥିରେ କିଛି କିଛି ଉନ୍ନତି ହେବ । ମଣିଷ ଆଶା ତ—ସେ କେତେ କଣ ଭାବିଥିଲା । ବିଲରୁ ନିର୍ଦ୍ଦୋଷ ଖଜଣା ଉଠିଯିବ—ବିନା ମାହାସୁଲରେ ଜଙ୍ଗଲରୁ କାଠ ବାଉଁଶ ଆଣି ହେବ, ସରକାର ଘର ଘରପୋଡ଼ ସେକ ଦେବ, ଏ ରାଜ୍ୟର ଯାବତ ଅନିଷ୍ଟର ମୂଳ-ମଦ, ଅଫିମ ଗୋଲି, ତାଡ଼ି ଆଦି ନିଶା ଏକଦମ୍ ଉଠେଇ ଦିଆଯିବ, ମାଲ୍‌ମୋକଦ୍ଦମା କଥା ପଦକେ ତୁଟିଯିବ, ଗାଁ ଗାଁରୁ ପକ୍କା ସଡ଼କ ହୋଇ ଯିବ, ଏପରିକି ମଜୁରିଆଙ୍କୁ ନିତ ମଜୁରି ମିଳିବାକୁ ଛୋଟ ବଡ଼ କଳ କାରଖାନା ମଧ୍ୟ ବସିଯିବ ।

କେହୁ କେହୁ ଭାବୁଥିଲେ ଗାଁ ଲୋକ ଯେଉଁଦିନ ଯାଏ ମୁଖରେ ଖାଇ ପିନ୍ଧି ଅଡନ୍ତାରେ ଜୀବନ କଟାଇ ନାହାନ୍ତି—ସେଉଁଦିନ ଯାଏ ଲାଟ, ବଡ଼ଲାଟ ସବୁ ସ୍ୱେଚ୍ଛାକୃତ ଦେଇ କୁଡ଼ିଆ ଘରେ ବସି ଦରିଦ୍ରଙ୍କ ଗୁହାରି ଶୁଣିବେ । ଆମ ମନ୍ତ୍ରୀ, ଅମଲା, ହାକିମମାନେ ସବୁ ଆଡ଼ମ୍ବର ଛାଡ଼ିଦେଇ ମହାତ୍ମା ଗାନ୍ଧୀ ବନିଯିବେ ।

ଆମ ଚଷା ଭାଇ ସପନ ଦେଖୁଥିଲା—

‘ଗହିର ବିଲରେ ତ କାବତା ହଳ ହଳ
ମୁବର୍ଣ୍ଣ ଲଙ୍ଗଳକୁ ଯେ ରୁପାର କୁଆଳ
ବଳଦ ହଳ ମନ ଯେ ପବନ
ହଳିଆ ବନ ମାଳୀ ଯେ ।

ସେ ଭାବ ନେଇଥିଲା ତାର ବିଲ ଧୋଇ ମରୁଡ଼ି ନାସ୍ତି ହୋଇଯିବ । ସରକାର ତା ପାଇଁ ସବୁ କରିଦେବ । ତାର ସ୍ୱପ୍ନ ଆପେ ଆପେ ସଫଳ ହୋଇଯିବ ।

କିନ୍ତୁ ସେ ଭାବ ନ ଥିଲା—

ସପନକଥାକୁ ସତ ମଣିଅଛୁ ବାଆକୁ ବାନ୍ଧିଛୁ ଫାଶୀ
ସରଗ ତରାକୁ ଆଶା କରିଅଛୁ ସେ କି ପଡ଼ିବ ଖସି ?

ବୁହୁଁ ବୁହୁଁ ବର୍ଷ ବର୍ଷ ହୋଇ ଏ ମଧ୍ୟରେ ସାତବର୍ଷ ବିତିଗଲା । ସେ ଦେଖିଲା କଷ୍ଟ କପଟ ଗୁଞ୍ଜିବାକୁ ତ ଇଂରେଜ ନାହିଁ; ତେବେ ତାର ସପନ ସଫଳ ନ ହେଉଛି କାହିଁକି ? ତେବେ କଣ ତା ରଇତିଆଣୀ, ତା ମୂଲିଆଣୀ-ଧୋବ ଲୁଗା ଖଣ୍ଡେ, ଧୋବ କୁରୁତା ଖଣ୍ଡେ ପିନ୍ଧି, ଛତା ଟେକି ପକ୍‌କାସଡ଼କରେ ଚାଲି ଚାଲିକା ଗାଁ ଭିତରୁ ବାହାରି ସହରର ଭଲ ମଞ୍ଚରେ ହସି ହସି କୋଉ ବାବୁଆଣୀଙ୍କ ଦେରେ ଯୋଗଦେଇ ପାରିବେ ନାହିଁ ?

ପରକେ କଲୁ ଅଧିକାରୀ
ସ୍ୱଭାବ ଛାଡ଼ିବ କପରି ?

ସେ ପାଞ୍ଚ ବର୍ଷ ଗଲା ପରେ ବୁଝିନେଲା ତାରି ନିଜ ଭାଇ ବଗିଧର ତାରି ଉପରେ ହେଲେ । କ୍ଷମତା ମଦରେ ତା କଥା

ବୁଲିଗଲେ । ସ୍ୱାଧୀନ ହେଲା ପୃଥ୍ୱୀ ବୋଲି ସେ ଖାଲି ଶୁଣି ଥିଲା । କିନ୍ତୁ କେବେ କେହି ତାକୁ କୌଣସି ଘୋଷଣା ପତ୍ର ଶୁଣେଇ ନ ଥିଲେ । ସେ ଦେଖିଲା ଯୋଉ ଇଂରେଜ ହୁରପ ଧରି ଆଗରୁ ରଜା ସାଜନ୍ତାଏ, ହାକିମ ଅମଲାଏ, ଓଲଟ ମୁଦ୍ରାରେ ତାକୁ ଡରାଇ ରଖିଥିଲେ, ସେଇ ଇଂରେଜ ହୁରପ ଭୂତ ଭଳି ତାକୁ ମାଡିବସିଛି । ଆଉ କେତେ କାଳ ଯେ ସେ ଏଇ ଭୂତ ତଳେ ଦୁଃଖ ଭୋଗିବ କିଏ କହିପାରେ ?

ଜାତ ସ୍ୱଭାବେ ଅବିବେକ
ସରବେ ଅସୁର ଦଇତ

ତାକୁ ଦ ଶତବର୍ଷ ସ୍ୱଜାଗଣ ଚିତ୍କାଏ ଚିତ୍କାଏ ଡରୁଥିଲା । ଭାରତର କେନ୍ଦ୍ର ଶକ୍ତ ମୁଠାଠାଣ ହୋଇଗଲା । ପ୍ରଦେଶମାନେ କେନ୍ଦ୍ରରୁ ବଳ ପାଇଗଲେ । ଆଉ ଡର ବା ରହିବ କାହିଁକି ?

ଯେବେ ପାଇଥାଏ ଘଇତା ବୁଲୁ
ସଜ ହୋଇଥାଏ ବାପ ଘର୍ଲୁ ।

ପୋକ ଜୋକ ମଶା ମାଛି ପରି ରଇତ ଗାଁ ଗହଳରେ ପଡିରହି ଭାବୁଛି—ପୃଥ୍ୱୀ ପରାଧୀନ ଥାଇ କଣ ଥିଲା ଏବେ ସ୍ୱାଧୀନ ହୋଇ ବା କଣ ହେଲା ?

ସେଇ ଆଇନ, ସେଇ ମିସଲ, ସେଇ ପିଅନ, ସେଇ ଚପରାସି । ସେଇ ଖଜଣା, ସେଇ ମକୁଦ, ସେଇ ଘରପୋଡ । ଉପରେ ପ୍ରଜାର ଛାତି ଥରୁଛି । ବେଳେ ବେଳେ—'ଦୁର୍ଜନ କୁବଚନ ବାଣ—ମର୍ମ ବିଦାରେ ତତକ୍ଷଣ ।" ସେ ମୂର୍ଖ ବୋଲି ତାକୁ କେହି କେହି ମଧ୍ୟ ପରିହାସ କରୁଛନ୍ତି ।

ସମସ୍ତେ ଲୁହାକୋହ ହେଉଛନ୍ତି କିଏ ଏବେ ସ୍ୱାଧୀନ ହେଲା ? ସହରମାନଙ୍କରେ କେତୋଟି ବାବୁ ଭାୟା ସ୍ୱାଧୀନ ହୋଇଥିବେ । ନ ହେଲେ କଟକ ସହରରୁ ଷହକେ ପଞ୍ଚାନବେ ଲୋକଙ୍କର ଅବସ୍ଥା ଦେଖିଲେ କିଏ କହିବ ଯେ ଏ ପୁଣି ସ୍ୱାଧୀନତା ପାଇଛନ୍ତି ? ମନରେ କାହାର ହରଷ ନାହିଁ । ଘରେ ଦାନା କନା ନାହିଁ । ଦାଣ୍ଡ ପଦାଣ୍ଡ ଅସନାର ଦେଖିଲେ ମଣିଷକୁ ବାନ୍ତିବାନ୍ତି ହୋଇଯିବ । ମଶା ମାଛି ଅବା

ସମୁଦାୟ ପୃଥ୍ୱୀ ଲାଗି ସେଇଠି ଜନ୍ମ ହେଉଛନ୍ତି । ବାକି ମଫସଲରେ ବକ୍ସା ଗାଡ଼ି ନାହିଁ, ସେଠି ଶୂନ୍ୟ ବକ୍ସା ଗାଡ଼ି ତେଲଙ୍ଗା ମଜୁରିଆ ଚଳାଉଛନ୍ତି । ଅବଶ୍ୟ କୋଠାବାଡ଼ି କରି କେତେଲୋକ ମଜା କରୁଛନ୍ତି । ବଡ଼ ବଡ଼ ଅସମ୍ଭବ କଥା କହୁଛନ୍ତି । ଆଉ କେତୋଟି ଖୁସାମଦିଆ ଘରେ ଦାନା ନାହିଁ, ଗାଣ୍ଡିକୁ କନା ନାହିଁ—ସେଇ ବାବୁ ସାହେବଙ୍କର ଗୁପ୍ତଚର ହୋଇ, ଭୃତ୍ୟ ହୋଇ ବେଳେବେଳେ ଆମ ଗରିବଙ୍କୁ ଦେଖି ହୁଁ ହୁଁ ଫିଁ ଫିଁ ହେଉଛନ୍ତି ।

ପରର ପାଣ୍ଠୋଇ ବୁହନ୍ତି ଛତା
ସ୍ୱଭତ ଭୁଲେ ହୋନ୍ତି ଲମ୍ବହତା ।

ସ୍ୱାଧୀନତା ପାଇ ସତକୁ ସତ ଆଉ କେତେଜଣଙ୍କର ଏ ଷଣି ସବୁ ଭଲ ହୋଇଛି । ମିଛନାହିଁ ଆମର ବହୁତ ମନ୍ଦ ହଉଛି । ବୁଢ଼ା ବୁଢ଼ୀଏ କହୁଛନ୍ତି ଯାହା ଯାହା ଭଲ ସବୁ ତାଙ୍କର, ଯାହା ଯାହା ମନ୍ଦ ସବୁ ଆମର ହେଲେ କଣ ଏ ପୃଥ୍ୱୀ ରକ୍ଷା ହୋଇ ପାରିବ ? ବେଳୁବେଳ ଅସନ୍ତୋଷ ଅଶାନ୍ତି ତ ବଢିଯିବ ? ଏଠାରେ ସ୍ୱାଧୀନତା ଅର୍ଥରେ ଧନ-ଲାଭ, କ୍ଷମତା ଲାଭର ସୁଖ ବୋଲି ବୁଝାଯାଉଛି । ପ୍ରକୃତ ସ୍ୱାଧୀନତା କିନ୍ତୁ ସ୍ୱପ୍ନରେ ଘୂରି ବୁଲୁଛି । ମୋଟାମୋଟି ଏ ଷଣି ଯହିଁରୁ ସ୍ୱଭାବରୁ ଆସି ରାଜ୍ୟ ବୈଶ୍ୟ ସ୍ୱଭାବ ହାତରେ ପଡ଼ିଛି । ଯାର ଟଙ୍କା ଅଛି, ସେଇ ଯାହା ପୁଣ୍ୟ ଦେଖାଇ ଆମକୁ ନାନା କପଟରେ ଭୁଲାଇ କାବୁକରି ରାଜ୍ୟର ମାଲିକ ହୋଇ ମଜା କରୁଛି ।

ଏ ମଧ୍ୟରେ ଗଡ଼ଜାତ ଅଞ୍ଚଳଠାରୁ ମୋଗଲବନ୍ଦି ଅଞ୍ଚଳ ଧନୀ ଲୋକେ ମାଲିକାନା ସୂତ୍ରରେ ମାରି ନେଇଥିବା ପରି ଜଣାଯାଉଛି । ଗଡ଼ଜାତ ଅଞ୍ଚଳର ଯାବତ ସୁଖ ସୁବିଧା ଲୋପକରି ଦିଆଯାଇଛି । ଏପରି କି ସେଠା ରଇତଙ୍କର କୌଣସି ହାରିଗୁହାରି ଲେଖିକରି ଦେଲେ ମଧ୍ୟ କେହି ହେଲେ କର୍ଣ୍ଣପାତ କରୁ ନାହାନ୍ତି ।

ଦୁଇ ତିନି ବର୍ଷ ତଳେ 'ଭୋଟ' ବୋଲି ଗୋଟିଏ ସୁଆଙ୍ଗ ଅଭିନୟ ହୋଇଯାଇଛି । ତାଳ ବାଡ଼ ଦେଇ ଘରେ ଚଉକିରେ ବସି ବାବୁ ସାହେବମାନେ ଭୋଟ ନେବା ଦୃଶ୍ୟ ଦେଖା ଯାଇଛି । ପ୍ରଜାଙ୍କୁ ଏ ଯାଏ

ମଧ୍ୟ କେହି ସମଝାଇ ନାହିଁ—ଏ କେଉଁ ଘଟଣା କଣ ? ତେବେ ଲୋକେ କହନ୍ତି, ଏ କେଉଁଠରେ ତାଙ୍କର କଳ୍ପନା କିଛି ଲାଭ ହେବ । ଗରିବ କାପୁଡ଼ା ରଏତ, ଚିର ଦୁଃଖିନୀ ରଇଣଆଣି । ସେ କି ଜାଣେ ଛନ୍ଦ ମନ୍ଦ । ଯେ ଯାହା କହିଲା ସେ ସେଥିରେ ଭୁଲିଗଲା । ଅଧନ ଆମ୍ବ ଚେଁ, ଝିଅ ପୁଅ ଲାଗି ଛତାଖଣ୍ଡେ ପାଇଲା ତ ସମ ଭେଇ ପେଣ୍ଡିଲୁଗା ପିନ୍ଧି ଖରିଜାଲୁ ଦାଣ୍ଡିଆ ନାଲି ଠିହିଠିହି କୁସୁମୀ ଶାଢ଼ୀ ଖଣ୍ଡ ପିନ୍ଧେଇ କେଉଁଠକୁ ବୁଲି ଆସିଲା । ବାଟଯାକ ଦେଖିଲା କେଉଁଠି ତା ଗୁରୁଦେବ ପୁରୋହିତ ଗୋସେଇଁ, କେଉଁଠି ତା ଇଷ୍ଟ ଦେବତାଙ୍କ ମାଳୀ, ପୂଜାରୀ, ପଣ୍ଡା; କେଉଁଠି ତା ଋଣଦାତା ମହାଜନେ ତାକୁ କଣ୍ଠମନ୍ତ୍ର ଦେଇ ବୁଲିଛନ୍ତି । ବଲୁ ପୁଅଣିର ବଡ଼ ସାଙ୍ଗ ବାରିକ ପୁଅ ଜହଲ ଯାଇ ନାଁ କରିଛି । ସେ ମଧ୍ୟ ଠାଣି ଠାଣି ଦାଂଜଥା ସମଝାଉଛି ଭେଇ ଅଣ୍ଡା ! ତରକି ଥିବେ ।

ପାପ ରାହୁ ସବୁ ଘେରିଲା ପରି ଯାବତ କୁସଂସ୍କାର ମଧ୍ୟରେ ଥାଇ ପୂର୍ବରୁ ଲୁହା ଯାଇଥିବା ଦେବତାମାନେ ତାକୁ ସମଝାଇ ବୁଲିଛନ୍ତି—ହେ ! ତୋର ଇଚ୍ଛା ହେଲେ ନିଜର ସ୍ୱାଧୀନ ମତ ନାହିଁ । ଆମର କଥା ମାନେ, ନ ହେଲେ ଅତଳ ସାଗରରେ ବୁଡ଼ିବୁ କି ?

କିନ୍ତୁ ଏଇ କେଉଁଠି ଯେ ତା' ଜୀବନ ମରଣ କଥା ନିଷ୍ପତ୍ତି କରୁଛି, ସେକି ଜାଣେ ? ସେ କେତେ ଉତ୍ସବ ଦେଖିଛି ସ୍ନାହାସ, ଦୋଳ, ଚନ୍ଦନ, ରଥଯାତ କେତେ କଣ ଦେଖିଛି—ଏ ମଧ୍ୟ ଏକ ଯାତ । ସେ ସବୁ ଯାତରେ ଚାରି ଦି ପଇସା ଖର୍ଚ୍ଚ ପଡ଼େ । ଏ ଯାତରେ ଯେ ସେ ଦି ପଇସା ହେଲେ ପାଇଲା । କାହିଁ ନ ଯିବ ?

ସମ ଭେଇ ଖରିଜା ଗୋବନ୍ଧା ବୋଉ ବାଟଯାକ ପଚାରି ବୁଲିଛି—

'ହଇ ହେ ଗୋବନ୍ଧା ବୋପା ! ସେଇ ବାବୁଟା ଏମିତି ରାଂମଠ କରି ମତେ ଖାଲି କାହିଁ ବୁଝି ଉଠିଲା କିଏ ? ଯେମିତି ମତେ ଖାଇଦେବ । ଆଚ୍ଛା କେଉଁଠି ଯାତ ଦେଖେଇ ଆଣିଲ । କେହି କାହିଁ ନାହିଁ । ସାଧବ ଘର ସାତବୋହୂ, ଅମୁହାଁ ଦେଉଳରେ ପଶିଲା ପରି ଅଚ୍ଛା ମତେ ଭୁଟକେଇଲ । ମଲିରେ ?

ଗୋବନ୍ଧା ବୋପା ଲେଖେ ଯାତରେ ମାଳୀ, କଣ୍ଟି, କାଚଗିନା, ସାଇକଲର ପଇସିକଆ କୁଣ୍ଡେଇ, ଖଜାମୁଆଁ, ପାଟଫୁଲ ଶକାହୁକ ବୋଲି ସ୍ୱପ୍ନ ଥିଲା । କିନ୍ତୁ ଦେଖିଲା କିଛିନାହିଁ । ସ୍ୱରଜା ମନ ନକ ବୋଲି କହିଲା—'ଚମ ସୁନ୍ଦର ପଣ ପତ୍ର ହାକମ ହୁକୁମା ଲୋକ କଷଟ କରୁଥିଲେ । ସବୁ ପତ୍ର ଲେଖା ହୋଇ ରହୁଛି । ସାମ ଲେଖେଇ ସ୍ୱରଜା କମଳା ବଡ଼ ସୁନ୍ଦର । ହାଡଆ ପରିଡ଼ା ସ୍ୱରଜାଟା କାଳୀ, ବାହାଡ଼ା-ଦାନ୍ତ—ଏଇମିତ ଏଇମିତ ।

କମଳାର କୋପ ଦେଖାଯାଏ । ଛ, ଛି, ପର ଅଶ୍ରିସ୍ସ ସୁହାଳ ପାଖରେ ବେଉତ ସ୍ନଲଚ । ସ୍ନଲ ସ୍ନଲ କହି କମଳା ବରର ଗାଲ ଚମୁଁ ଦିଏ ।

( ଏହି ଯେଉଁ ଗାଲ ଚମୁଟା କୁଶ୍ୟଟି ଲୁହାଗଲା ଏହା ଓଡ଼ିଆଙ୍କ ଗାଁ ଗହଳରେ ହଜାରକରେ ଅଛି କଣେ ଦି ଜଣଙ୍କ ଘରେ )

ଲେଖେ ପାଲୁ ସରିଲା, ଆଉ ଚହଳ ମହଳ ନାହିଁ । କିଏ କାଣୁଚ କଣ ହେଲା । ଖବର କାଗଜ ତ ଗାଁ ଲୋକେ ପଢ଼ନ୍ତି ନାହିଁ ବା ଖବର କାଗଜ ଏମିତ ଖଣ୍ଡିଏ ନାହିଁ ଯାହାକୁ ଗାଁ ଲୋକେ ବୁଝିବେ । ଖାଲି ସଂସ୍କୃତରେ ସବୁ କଥା ଲେଖା ହେଉଛି । ଅତ ସଂସ୍କୃତରେ ପୁଅ ନାଁ ବାଣ୍ଟୁଦେବ କହନ୍ତି—ଲୋକେ ବୋପଦେବଙ୍କୁ । ଗାଁ ଗହଳର ସୁଖ ଦୁଃଖ କିଏ କମିତ ଲେଖନ୍ତି । ସେ ଲେଖା ସେଇ ଧୋବଲ ବାବୁମାନେ ପଢି ଗଦ୍‌ଗଦ ହୁଅନ୍ତି । ତାଙ୍କର ଭିତରେ ବାକ୍ୟ ସୁନ୍ଦ ହୁଏ ।

ଏବେ ଗାଁ ଲୋକଙ୍କ ଲାଗି ଗଣ ସାହିତ୍ୟ ଲେଖା ହେଉଛି । ସେ ଗଣ-ସାହିତ୍ୟକୁ ମଧ୍ୟ ବଡ଼ ବଡ଼ ଲୋକେ ଖାଟର ତଳକୁ ଆଣୁଚନ୍ତି । ତାହା କେଉଁ ଗଣଙ୍କ ଲାଗି ଲେଖା ଯାଉଛି, କେଉଁ 'ଗଣ' ତାକୁ ପଢ଼ୁଛନ୍ତି, ସେଇ ବାବୁମାନେ ଜାଣନ୍ତି ।

ମଣିଷ ଜାତରେ ଏବେ ଧନୀ ନିର୍ଦ୍ଧନ ଦି ଜାତ ସାଥିକୁ ବାବୁ ଅବାବୁ ଦି ଜାତ ଗଢ଼ି ଉଠିଛନ୍ତି । ଧନୀମାନେ ଆମ ଲୋକଙ୍କ ପରି ମଣିଷ । କିନ୍ତୁ ସେ ଜମି, ଟଙ୍କା, ସୁନାକୁ ଝୁଣେଇ ରକ୍ତ ଶୋଷିଲା ପରି

ଲୋକଙ୍କ ଠାରୁ ଶୋଷି ଖାଉଛନ୍ତି । କିନ୍ତୁ ଏଇ ବାବୁମାନେ ଆମ ମଣିଷଙ୍କ ପରି ନୁହନ୍ତି । ତାଙ୍କର ଭିନ୍ନ ଭିନ୍ନ ଭେସ ।

ଇଂରେଜି କଥା ମା ବୋଉଙ୍କୁ କହନ୍ତି । ମଥା ସବୁବେଳେ ଗରମ । ଯୋଉମାନଙ୍କ ଠୋଉ ଜନ୍ମ ହୋଇଥିଲେ, ବେଳେ ବେଳେ ଖବୁଥିବେ ସେ ଭୁଲରେ କାହାକୁ ମାଆ ଡାକୁଛନ୍ତି । ବାବୁ ଖିଆ ଖାଇବେ, ସିଗାରେଟ ପିଇବେ, କୁଲୁହା ଖିଷ କରିବେ । ବାପ ଉଗ୍ରସେନ, ମାଆ ପଦ୍ମାବତୀ । କିନ୍ତୁ ପୁଅ ନାଁ କଂସ ! ଦ୍ରାମିଳ ରାକ୍ଷସ ଭିନ୍ନ ବିଶ୍ୱବିଦ୍ୟାଳୟର ଶିକ୍ଷା ଆଜ ପଞ୍ଚସ୍ତର ପରିମାଣ ଲୋକଙ୍କୁ ପଚିଶି ପରିମାଣ ଲୋକଙ୍କର କ୍ରୀତଦାସ କରି ରଖି ଦେଇଛି । ଗାଁରେ ଆମ ଲୋକେ କଥା କୁହନ୍ତି—ଦାସ ମହାପାତ୍ରଙ୍କ ପୁଅ ହରିଆ, ବାବୁ ହୋଇଗଲା ଯେ ସେ ଆଉ ଅଡ଼-ବାଙ୍କରେ ଆମକୁ ଟିକିଏ ଖିହଁ ଦେଇ ଯାଉନାହିଁ । ଆମକୁ ବେଶୀ ବିପଦରେ ପକାଉଛି । ଆମଠୁ ବେଶୀ ଲାଞ୍ଚମିଛ ନେଉଚି । ଓହୋ !

କେହି କେହି କହନ୍ତି ହଉ ହଉ ଆମରି ପୁଅ ନାତି ତ । କେଣଟିଏ ହେଲେ ତ ସାଇବ ପରି ଦେଖା ଯାଉଚି । ସାତ ସମୁଦ୍ର ତେର ନଈ ପାରିରେ ଥିବା ଇଂରେଜି ଠାରୁ ତ ଆମେ ଦୁଦଠା ସିନା ଆଣି ପାରୁ ନଥାଏଁ, କେଣ୍‌ଠା ତ ଆଣିଥାଏଁ ।

ଜଣେ ହସି ହସି କହେ—'ଆରେ ଭାଇ ! ଭେସ ବଦଲିଲେ କ୍ୟା ହୁଆ ତେସ୍ରା, ଦିଲ୍‌କା ବଦଲ ହୁଇ ହୈ ।

ତେଲଙ୍ଗି, ବଙ୍ଗାଳି, ପଞ୍ଜାବୀ, ଗୁଜୁରାଟୀ, ବିହାରୀ ସବୁ ଉଚ ପାହ୍ୟାଅ ହାକିମ । କାହାର କୃଷି ବିଭାଗ, କାହାର ରାସ୍ତା ବିଭାଗ, କାହାର ପୋଲିସ ବିଭାଗ, କାହାର ଜଙ୍ଗଲ ବିଭାଗ, କାହାର ଶିକ୍ଷା ବିଭାଗ, କାହାର ଠିକାଦ୍ରା ବିଭାଗ, କାହାର ମଦ ଗଞ୍ଜେଇ ଅଫିମ ବିଭାଗ । ବିଭାଗ ତ ବିଭାଗ କେତେ ବିଭାଗ । କୋଉଠି ସେ ବାବୁମାନେ ରହନ୍ତି, କିପରି ଦୁଃଖ ସୁଖ ରଏତର ଶୁଣନ୍ତି, ତାଙ୍କର ରୂପ କିମିତି, ଭେକ କିମିତି ଏଇ ସାତବର୍ଷରେ ଜାଣି ପାରିଲି ନାହିଁ କିଷଣ । ଘର ପୋଡ଼ିଗଲା ବିଲ ଜଳିଗଲା, କେହି ପଦେ ବୋଧ ଦବାକୁ ନାହିଁ । କେତୋଟା ଯନ୍ତ୍ରର ମନ୍ତ୍ରର ଢଲି ପରି ଭରସା ଦଅନ୍ତି—ବନ୍ଧ ଖୋଳାହବ, ତଗାଡ

ପାଇବ, କୃଷି ଋଣ ମିଳବ-ଏଥ ସବୁ ଦସ୍ତଖତ ।' ଏଥ ଟିପଚ୍ଛନ୍ତି । କେତେ ଟଙ୍କା ଅଇଲା, କିଏ ପାଇଲା, କିଏ ନେଲା ତା' ବଟସ୍ରା ରଏତ ଜାଣେ ନାହିଁ । ସବୁ କଥାରେ କହେ—ଠାକୁର ବୁଝିବେ । କିଏ ଖାଇଗଲା ତାଙ୍କ ପାଉଣା ପଇସା କଉଡ଼ି, କିଏ ବୃଥାରେ ମାଡ଼ ଚଢ଼େଇଲା ବାଟରେ ଅସୁ ଅସୁ, ଏହାର ପ୍ରତିକାର ପାଇଁ ତାଙ୍କର ଏବେ ମଧ୍ୟ କୌଣସି ସୁବିଧା ନାହିଁ । ରାଜ୍ୟର ମନ୍ତ୍ରୀ କର୍ତ୍ତା ମଧ୍ୟ କହିଲେଣି—ହଁ ପ୍ରକୃତରେ ସୁବିଧା ନାହିଁ । ତେବେ ସେ ଶାସନ କରୁଛନ୍ତି କାହିଁ କି ? ଏତେ ବଡ଼ ପ୍ରଶ୍ନ ବା କିଏ ପଚାରିବ ? ତା ପଚାରିଲେ ବା କିଏ ଶୁଣିବ ? ରଏତ ଲାଗି କମି ସଂଗ୍ରହ ହେଉଛି । ରକ୍ତ ସଂଚୟ ହେଉଛି, ଧାନ ସାଇତା ହୋଇ ରଖା ଯାଉଛି । ଏ ସବୁ କେବଳ ଏଥି ଦେବତାଏ ବର ଦେଲା ପରି କୁହାଯାଉଛି ମାତ୍ର । ତଉଦଗରେ ମିଥ୍ୟା, ଛଳନା, ପାପ, ଅହମିକା, ଗର୍ବ ଭରି ଯାଇଛି । ଆସ୍ତେ ଜଣା ଯାଉଛି ଯେପରି କପଟ୍ରି ମାଡ଼ି ଆସୁଛି । ଖବର କାଗଜରେ ଯେତେ ଯେତେ ମିଠା ସମ୍ବାଦମାନ କୁହା ଯାଉଛି, ତାହା ଗରିବ ପ୍ରଜାଙ୍କ ଲାଗି ନୁହେଁ । ନିଖିଳ ଭାରତ ଅମୁକ ସମ୍ମିଳନୀ, ଅଖିଳଭାରତ ଅମୁକ ଇଉନିୟନ, ଅଖିଳୋତ୍କଳ କେଉଁ ସମିତି ଏ ସବୁ ନିଖିଳ, ଅଖିଳ, ବିରାଟ ନାମରେ ଅତ୍ୟାଶ୍ଚର୍ଯ୍ୟ ଘୋଷଣା ମଧ୍ୟରେ, ଯାତ୍ରାଉତ୍ସବ ମାତ୍ର ହେଉଅଛି । ଏଥିରେ ଦରିଦ୍ରର ଦୁଃଖ ଅଶ୍ରୁମାନାରେ ବଦଳୁ ନାହିଁ ।

ଆଉ ସବୁ କଥା ଛାଡ଼ । ଏବେ ଆମେ ଏ ଦୁଃଖ ସମୁଦ୍ରରୁ କମିତି ଉଦ୍ଧାର ପାଇବା । ପୂର୍ବରୁ ଦଳେ ଆମକୁ ଶିଖେଇଛନ୍ତି ଯେ ଈଶ୍ୱର ଆମ ଦୁଃଖ ଦୂର କରିବେ । ମଣିଷ ଚେଷ୍ଟାରେ କିଛି ହେବ ନାହିଁ ।

'ସମସ୍ତେ ହୋଇ ଏକ ମୁଖ—ଡାକିଲେ ନାରାୟଣ ରଖ !' ଡାକଶୁଣି ନାରାୟଣ ଶଙ୍ଖଚକ୍ର ଗଦାପଦ୍ମ ଧରି ହାଜର ହୋଇଯିବେ । ତା ପରେ ଦୁଃଖ ହରଣ କରିବେ । ଏ ଈଶ୍ୱର କେବଳ ଭାରତବାସୀଙ୍କ ଦୁଃଖ ଶୁଣନ୍ତି । ଭାରତ ଲୋକେ ତାଙ୍କୁ ମାନନ୍ତି । ସେ ଦେଉଳରେ ଭୋଗ ଖାଇ ରହନ୍ତି । ତାଙ୍କ ବିଷୟରେ ବହୁତ ଗଳ୍ପ, ତତ୍ତ୍ୱ, ଅନୁଭବ ଭରିଅଛି

ପ୍ରଚ୍ୟୁର ହେଉଛି ଯେ ସେ ସପ୍ନ ଦେଖା ଦଅନ୍ତି । କୋଉ ଧନବନ୍ତ ମହାଜନ ପୁଅ ତାଙ୍କୁ ଗୁହାରିଆ ପଢ ସପ୍ନ ଦେଖିଛନ୍ତି । କୋଉ କାନ-ଡଗିଟି ପୁଅ ସେ ଇଶ୍ୱରଙ୍କ ସାଥିରେ ବି, ଶଙ୍ଖଘଣ୍ଟା କଥାସ୍ଥା ହୋଇଛନ୍ତି । ତମେ ତ ସାଧନା କରି ପାରୁନ, ତାଙ୍କ ଦାସିଆ ବାଉରି, ରଘୁ ଅରକ୍ଷିତଙ୍କ ପରି ନଭଜିଲେ କାହିଁ ଦେଖିବ ବା ତୁମକୁ ସେ କାହିଁ ଧନ ଦେବେ ?

ତମର ପୂର୍ବ ଜନ୍ମଫଳ ତୁମେ ଭୋଗୁଛ ବୋଲି ସେଦିନ ପଣ୍ଡିତେ ବାଟରେ ଯାଉ ଯାଉ ବଖାଣିଲେ । ହାତ ଦେଖି କୋଷ୍ଠୀ ସାଧି ଚର-ଉଗ୍ଣ ଅବଧାନେ କହିଲେ ଗ୍ରହର ଶୁଭଦୃଷ୍ଟି ପଡୁନାହିଁ । ଆଉ ସବୁ ଭଲ ଅଛି । ପୁରୋହିତେ କହିଲେ—ସଂକ୍ରାନ୍ତିରେ ହୋମ ଟିକିଏ କର, ଦେଖିବ କପରି ଲାଭ ହେବ ।

ହାୟ ମଣିଷ ! ତୁମକୁ ଏତେ ମାୟାଜାଲରେ ଛନ୍ଦିଛନ୍ତି ସୁଖୀ ଲୋକେ ଯେ ତୁମ ଦୁଃଖ ମଧ ତୁମେ ଜାଣି ପାରୁନାହିଁ । ସାଧୁ, ସନ୍ଥ, ମହନ୍ତ, ପଣ୍ଡା, ପୁରୋହିତ, ଗୁଣିଆ, ଯୋଗି, ବୈଷ୍ଣବ, ଅବଧୂତ, ନାହାକଙ୍କ ସାଙ୍ଗକୁ ଏବେ ବାହାରିଛନ୍ତି—ନେତା, ନେତ୍ରୀ, ମେମ୍ବର, କର୍ମୀ, ପ୍ରଚାରକ, କେତେ ଭଳିକ ଭଳି । ସମସ୍ତେ ନିଜ ମତ ତୁମ ଉପରେ ଲଦିବାକୁ ବ୍ୟସ୍ତ । ତୁମର ଯନ୍ତ୍ରଣା, ତୁମର ଆର୍ତ୍ତନାଦ, ତୁମ ଦାରୁଣ ନିଗ୍ରହ ତୁମକୁ ଜଣା ପଡୁନାହିଁ । ଏ ମନ ଭାବୁଛି—ତୁମର ଦୁଃଖ କଣ ଏବଂ ତାର କାରଣ କଣ ଏ କଥା ଘରେ ଘରେ ଜଣାପଡିଲେ ଏକାଦିନେ ତୁମର ଦୁଃଖ ଦୂର ହେବ । ସେଇଦିନ ଭାଇ ଭାଇ ଡାକ ଶୁଭିବ, ଏ ପୃଥ୍ୱୀ ଫାଟିବ—ଜଗନ୍ନାଥ ବାହାରି ଅମୃତ ବାଣ୍ଟିବେ ।

ସେ ଦିନ ଗୋଟିଏ ମୌଜାକୁ ଯାଇଥିଲି । ଏଇ ଯେଉଁ ବର୍ଣ୍ଣନା ମୋଟାମୋଟି ଦେବି, ଅଳ୍ପ ଅଧିକେ ଓଡିଶାର ସବୁ ମଉଜା ଠିକ୍ ଏହାରିପରି ନିଶ୍ଚୟ । ଧରନ୍ତୁ ତାର ନାମ ହେଉ କଣ୍ଟାପଦର । କେତୋଟି କାଲ୍ପନିକ ନାରେ ସେଠାର ଲୋକେ କେତୋଟି ଚରିତ ହୁଅନ୍ତୁ ।

ଗାଁ ଟି ବଲ ମଝିରେ । ବଲସୁଡିକ ଗ୍ରାମ ଲୋକଙ୍କର ସମୁଦାୟ ନୁହେଁ । ଏଥିରୁ କେଉଁ ଠାକୁରଙ୍କର ଚଉଠେ, ବ୍ରାହ୍ମଣଙ୍କର ବ୍ରହ୍ମୋତ୍ତର

କାଟିବ୍ ଚଉଠେ । ବାକି ଅଧାକୁ ରଇତ ଜମି । ଏ ଜମିରୁ ବଳକ୍ ହୋଇ-ଥିବା ଅଧା ଜମିରେ ତିନକଣ ଧନୀ ମହାଜନ ପ୍ରଜା । ବାକି ଚଉଠେ ଜମିରୁ କାହାର ମାଣେ, କାର ପାଞ୍ଚଗୁଣ୍ଠ, କାର ବା ଦଶଗୁଣ୍ଠ । ଗାଁ ସରବରାକାର ଆଗେ ଯେ ଥିଲେ ତାଙ୍କର ଜମି ସର୍ବମୋଟ୍ କୋଡ଼ିଏ ମାଣ ଥିଲ୍ । କଲେକ୍ସନ ଏଜେଣ୍ଟ ରହିବାରୁ ସେଇଗ୍ ଜମି ନିଲମ ହୋଇଗଲ୍ । ଆଉ ତାଙ୍କର ପାଞ୍ଚମାଣ ଥିବ ନ ଥିବ । ଗାଁର୍ ହରିଜନମାନଙ୍କ କୁଡ଼ିଆ ଅଛି । ଜମି ନାହିଁ । ହୁଲିଆ ସାହିର ମଧ କୁଡ଼ିଆ କେବଳ ସମ୍ବଳ ।

ଖାଲ୍ ସ୍କୁଲଘର । ଦେଢ଼ଶହ ଘର ବସ୍ତିରେ ଆଠ୍ଘର ଗଣ୍ଡିରେ ବନ୍ଧାଣ ବଖରା । ଗାଁରେ ନିଆଁ ଏଇ ସାତ ବର୍ଷରେ ଦ ଥର ଲଗିଛି । ବଖରାଏ ଅଗ୍ନି ଦେବତା ଛାଡ଼ିଦେଇ ନାହାନ୍ତି । ହେଙ୍ଗୁଲା ପଣା ନ ଦେବାରୁ ଏମିତି ହେଲା ବୋଲି ଗାଁ ମାହାଜନ ସନେଇ ସାହୁ କହିବାରୁ ଲୋକେ ତା ସତ ମଣିଛନ୍ତି । କନ୍ତୁ ପଣା ବର୍ଷରେ ହଣ୍ଡା ହଣ୍ଡା ଢ଼ାଳି ଢ଼ାଳି ତା ପାଖ ପଙ୍କଜ ପୁର ମୌଜା ଏହି ସାତ ବର୍ଷରେ ବୃଥର ପୋଡ଼ି ଯାଇଛି । ବର୍ଷା ଓ ଶୀତ ଦିନରେ ଗାଁ ସବୁ ପୋଡ଼ି ଯାଉଛି । ସନେଇ ସାହୁଏ ଗୋପୀ ଚିଲକରେ ରାଧାକୃଷ୍ଣ ନାମର ବଙ୍ଗହରପ ଛପା ଆଉ ପାଦପଦ୍ମ ଛପା ଛାତି, ତେଣା ଉପରେ ଚଢ଼ାଇ ଧର୍ମାତ୍ମା ସାଜି କହନ୍ତି—ଆହେ, ଦେଖଯେ ପଙ୍କଜ ପୁର ମାଇପି ଗୁଡ଼ାକ ଅଲଣ୍ଡି ଛୁଆଁ ଅଛୁଆଁ ବାରୁ ନାହାନ୍ତି । ପଣା ପାଣି ଦେଲେ କଣ ହେବ, ଶୌଚ ଥିଲେ ହେବ ନାଁ ?

ସାହୁଏ କୃଷ୍ଣ ନାମାବଳୀ ପକାଇ ଭେଉଥ, ଅଷ୍ଟିଣରୁ ଛକି ବସିଛନ୍ତି—ଏ ମଡ଼ା ରଇତଙ୍କ ପସ୍ତମାଂସ ଭିତରୁ ଯେଉଁ ପୋଟଗ୍ ରକ୍ତଟିକ ଝରୁଚ, ତେଲ ଲୁଣ ବଳ, କାଟିଆ ଦେଇ, ଛଅଣା ସୁଦରେ କରଜ ଦେଇ ସେ ଟିକ ଝାଣି ନେବେ କପର୍ ?

ଗାଁ ମଝିରେ ଚଉଦ ଫୁଟ ଓସାରର ରାସ୍ତା । ଠାଏ ଠାଏ ଦଶ ଫୁଟ୍କୁ ଆସି ଗଲ୍ଣି । ପିଣ୍ଡା ଡାଲଲ୍ ଲଗି ରହିଛି । ପିଣ୍ଡାର ଓସାର ଦ ଫୁଟ, ଫୁଟେ, କେଉଁଠି ମଧ ନାହିଁ । ଡିମା ଡିମି ପଥର ଅସମତଲ, ରଙ୍ଗମାଟି ଲିପା ପିଣ୍ଡା, ଡାଟିବାଡ଼, ଗୁହାଳ ପୋଚ ଗନ୍ଧରେ ନାକ ଫାଟିଯିବ,

ଘରର ଏପରି ଅବସ୍ଥା ଯେ କାହାରି କାହାରି କାଠ ମଧ୍ୟ ନାହିଁ । ସ୍ୱତ ବର୍ଷାକାଳ ଖୋଡ଼ା ମଡ଼େଇଲେ ଭୁଙ୍ଗଶା ଛଡ଼ । ଗାଁ ମଝିରେ ଶଜନା ଗଛଟାଏ ଲେଖାଏଁ କେଉଁଠି କମିଥ ଅଛି । ପାଉଁଶ ତା ମୂଳରେ ଦିଆ ହୋଇଛି । ସଅଁବାଳୁଆଙ୍କ ପ୍ରତାପ ବଡ଼ ବେଶୀ । କୁକୁର ଗୁହ ସେଇଠି ପୂର୍ଣ୍ଣ । ଗାଁ ଦାଣ୍ଡରେ କୁତା କୁଣ୍ଡା ହୋଇ ପଲେ ଅଇଁଷାଖିଆ କୁକୁର ସାଙ୍ଗକୁ ଅତ କଦର୍ଯ୍ୟ କେତୋଟା ଲଙ୍ଗଳା ପିଲାଙ୍କ ଦୌରାତ୍ମ୍ୟ । ପାଟିରେ ଅସଭ୍ୟ ଭାଷା ବସାକରି ରହିଛି । ସ୍ୱତ ପାଇଲାବୁ ସ୍ୱତ ଦିବାଯାଏ ଠେଙ୍ଗି ବାଡ଼ି ଖେଳ । ସେ ଠେଙ୍ଗିବାଡ଼ି ବାଜି କେତେ ଯେ ଖଣ୍ଡିଆ ଖାବରା ହେଉଛନ୍ତି, କିନ୍ତୁ କେହି ତାଙ୍କୁ ରୋକିବାକୁ ନାହିଁ । ଯାହାହେଉ ସେଇ ହେଲା ଶିଶୁଙ୍କ ବ୍ୟାୟାମ ।

ବର୍ଷା ପାଣିରେ ବର୍ଷ ବର୍ଷ ଧରି ଗାଁ ଦାଣ୍ଡର ଖାଲ ଢିପ ଅବସ୍ଥା ସେମିତି ରହିଛି । କିଏ ତାହାର ଶୋଚ୍ୟ ଅଶୋଚ୍ୟ ଦେଖୁଛି । ଗାଁ ମୁଣ୍ଡ କଇଁଆ ଗଛ ମୂଳରେ ଭଙ୍ଗା ଶଗଡ଼ କେଇଖଣ୍ଡ ଛାଇ ଆଶ୍ରାରେ ଥୁଆ ହୋଇଛି । ଆଗେ ଏଇ ଅଣଓସାରିଆ ଗାଁ ଭିତରେ ମଧ୍ୟ ରହୁଥିଲା । ତା ସାଙ୍ଗକୁ ଗୋଛ ଗୋଛ କଣ୍ଟା ମଧ୍ୟ ରହୁଥିଲା । କୋଉ ପଠାଣ ଦାରୁଗା ପାଇଁ ଆଇନରେ ପାଞ୍ଚଟଙ୍କା ଲେଖାଏଁ ଜରିମାନା କରେଇବାରୁ ଗାଁ ଦାଣ୍ଡରେ ଏବେ ଥୁଆ ହେଉନାହିଁ । ତଥାପି ଧୋବେଇ ପଧାନ ନମାନି ଏବେ ତା ଦୁଆରେ ଖତ ଗଦେଇଲାଣି । ତାର ପରି କୋଉ ଜ୍ଞାନିଜ ଘଇତା କାନତରାଟି ପାଖେ ମଟୁର ଅଛି । ବଡ଼ ଚଲାଖ ସେ । ଧୋବେଇ ପଧାନକୁ କହିଛି—ସେ ତା ଦୁଆରେ କଦାଡ଼ ବଦାଡ଼ ହଗିଲେ ମଧ୍ୟ ତାକୁ କେହି ଏ ସ୍ୱାଧୀନ ଯୁଗରେ ପାଟି ଫିଟେଇ ପାରିବ ନାହିଁ । ପାଞ୍ଚଟା ଦସ୍ତଖତ ମାରିଦେଲେ ଦାରୁଗା ତ ଦାରୁଗା, ଦାରୁଗା ବଡ଼ ବୋପା କହିଲ ଖାଟିସିବ ।

ଧୋବେଇଠୁ କଥା ଦପଦ ଶୁଣି ବୁରୁନ୍ଦା ମା ଖତ ଦଗାଣ୍ଡୁଆ ତା ଦୁଆରେ ରଖିଛି । ନାତକୁ ସଞ୍ଜ ସକାଳେ ମଧ୍ୟ ହଗେଉଛି । ଘରେ ଘରେ ଅଧା ଦରଲେଣା ଝାଟିବାଡ଼ ଭିତରେ କବାଟ ନାହିଁ । ତାଟି-ଦୁଆରେ ଦେଇ କେତେ ଲୋକ ରହିଛନ୍ତି ।

ଏତେ କଷ୍ଟ ଏତେ ଲୁଣ୍ଠିତ ଏ ଲୋକ ସ୍ତବକ ତାହା ଉପରୁ ବଞ୍ଚନା କରାଯିବ । ଏଇତ ଆମେ । ଏଇ ଆମର ସ୍ୱାଧୀନ ନାଗରିକ । ଧୂଡ଼ୁ ଧୂଡ଼ୁ ଚମଡ଼ା ସତର ବର୍ଷିଆ ଯୁବତୀ ନାରୀଙ୍କର, ଛନା କ ଘୂର ଫୁଅ ଝିଅ ମୁଲୁଠା ମୁକୁଠା, ଅପରିଷ୍କାର ଶିଙ୍ଘାଣି ପୋଚରା କେଁ କେଁ କାନ୍ଦ କାନ୍ଦ ଗୋଡ଼େଇଛନ୍ତି ପଛରେ । ସବୁରି ଯୁବତୀଙ୍କି ଯୋଡ଼ିଏ ପିତଳର ଗରା:ଧରି ପାଣି ପାଇଁ ଯାଉଛନ୍ତି ବିଲ ମଝିକୁ । ଗୋସେଇଁ ଆହ୍ନାନ୍ତାରୁ ଯାଉଛି ବାରଣା ପଇସା ଲାଗି କୋଉ ଅଘୃଅଟ୍ଣି ଜନସ୍ତକୁ । ପିଲାଗୁଡ଼ାକ ସମସ୍ତେ ଲଙ୍ଗଳା । ଦେହରେ କେଜାଣି କେଉଁଦିନୁ ମଳି ବସି ରହିଛି । ଓଜନ କଲେ ମଳି ପାଏ ପାଏ ବାହାରିବ । ମାଇପିଙ୍କ ବେଶରେ ରଙ୍ଗ-ମାଟି ବୁଡ଼ା ବହଳର ଖଦ ଖଣ୍ଡେ ଖଣ୍ଡେ । ଏଇ ପୁଣି ସୌନ୍ଦର୍ଯ୍ୟର ଦେଖା । ଏଙ୍କୁଇ ଦେଖି ପୁରୁଷ ଦୁଃଖ ଭୁଲିବ । ନାକରେ, କାନରେ, ହାତରେ, ଗୋଡରେ, ଅଙ୍ଗୁଠିରେ, ବେକରେ ଲୁହା, ପିତଳ, କଂସା, ଟାମ୍ବ, ରସ, ସିସାର ଗହଣା କେତେ କଣ ? ପିତଳର ଖଡ଼ୁବାହି ଦେଖିଲେ ଭୟ ଆସିଯିବ ।

ଏ ଗ୍ରାମରେ ଧୋବଲୁଗା ପିନ୍ଧା ମଣିଷ କେହି ଜଣେ ନାହିଁ । ଜଣେ କଟକର ବିଖ୍ୟାତ ବ୍ୟକ୍ତି ଥରେ ଏମାନଙ୍କୁ ଦେଖି ପଚାରିଥିଲେ— ଆପଣମାନେ: ସମସ୍ତେ କଣ କୁମ୍ଭିପଟିଆ ଅବଧୂତ ଦୀକ୍ଷା ନେଇଛନ୍ତି ? ଲୋକେ କହିଲେ ଆଜ୍ଞା, ଧନ ନାହିଁ କାହୁଁ ଧୋବ ଲୁଗା ପିନ୍ଧିବୁ ?

ଗାଁ ମୁଣ୍ଡ ପଦାରେ ଏବଂ ପୋଖରୀ ହୁଡ଼ାରେ କୁକୁଣ୍ଡା ଜାନସିର ଥୁଣ୍ଟା ଭିତର ଯାକ ଗୁହ ବଦାଣ୍ଡ ବଦାଣ୍ଡ । ଏହି ହେଲା ସମସ୍ତଙ୍କ ପାଇଖାନା । ଶୌଚ ପାଇଁ ପୋଡ଼ା ପୋଖରୀଟାଏ ଅଛି । ସେଇଠି ବାର-ମାସ ଦାନ୍ତଘଷା, ଗାଧୁଆ, ଅଣ୍ଟ ନଅଣ୍ଟାଳ ଖିଆପିଆପାଣି ମଧ୍ୟ ନିଆଯାଏ ।

ବର୍ଷକତଳେ ବାବୁ ଡକେଇ ଥିଲେ ପୋଖରୀ ଖୋଳାକୁ ଟଙ୍କା ଦେବେ ବୋଲି । ସ୍ୱେଚ୍ଛ ପ୍ରଜା ଦେବେ ଶ୍ରମଦାନ ପରେ ସରକାର ଦେବେ । ଗାଁ ଲୋକେ ଏତେ ଦୁଃଖ ମଧ୍ୟରେ ମଧ୍ୟ କଷ୍ଟ ସହି ଷଣ୍ଢେ ଠକାର ମାଟି ଖୋଳିଲେ । ଦସ୍ତଖତ ତାଙ୍କଠୁ ନେଇଗଲେ । ତଏ

କହିଲ୍ ସରକାର ଟଙ୍କା ଦେଲ୍ କିନ୍ତୁ ତାକୁ କିଏ ବାଣ୍ଟମାରଣା କରି ଖାଇ ଗଲେ । ଲୋକେ ଦମାସେ ଶକ୍ତମାସେ ଧାଇଁଲେ, ଧୋବେଇ ପଧାନ ତା ବୁଝିଛି ଲୁଆଇବ କହି ସବୁ କରିଦେବ କହିଲ । କିନ୍ତୁ ଶେଷକୁ ମାମଲତକାରିଆ ଧୋବେଇ ବଂଗଳା ପିଣ୍ଡାରେ ଉଢ଼ ଉଢ଼ ହୋଇ କଥା କହିବାରୁ ତା ସାଥିରେ ଥିବା ଦଲପାକ ସନ୍ତ୍ରପାଏ ଅଠବ ରହି ଏକାବେଳେ ପୋଖରୀ ଖୋଲା ଭୁଲିଗଲେ । ଭୁବଲେ,

ସେ ତ ସହଜେ ଯମ ଭୁସି
କେ ଦେବ ତହିଁ ଅନ୍ନବାର ।

ବୋଲି ଭଟ ଅମଳର ଅତଡ଼ା ଖସା ପଥର କୂଅଟାଏ ଗାଁ ମୁଣ୍ଡରେ ଅଛି । ସେଇଠୁ ପାଣିସୁ ଜଳ ଆଖ ପାଖ ଲୋକେ ନିଅନ୍ତି । ବାକିମାନେ ବାଲିରେ ଖୋଲା ଯାଇଥିବା କୂଅରୁ ପାଣି ବୁହନ୍ତି—ଖରା ବର୍ଷା ବାରମାସ ।

ଏ ଗାଁ ହେଲ କାଲୁ ଏଠାରେ କେହି ଯୋଡା ଲଗାଇ ନାହାନ୍ତି । ଏ ଗାଁରେ ଝରକା ନାହିଁ । ଏ ଗାଁରେ ଚୂନ ସିମେଣ୍ଟ ପଶି ନାହିଁ, ସୁନା-ମୁଦି, ସୁନା କାଚ ସ୍ୱପ୍ନରୁ ମଧ୍ୟ ଆସି ନାହିଁ । ନାରୀ ବକ୍ଷ ଲୁଗୁଇବାକୁ କାଛୁଲା ଓ ବ୍ଲାଉଜ୍ କଣ କେହି ଜାଣନ୍ତି ନାହିଁ । ଏହି ଦେଢ଼ଶ ଘରରୁ ପ୍ରାୟ ପଚିଶି ଘର ମୁଗ ଡାଲି ବର୍ଷରେ ପାଞ୍ଚ ଛଅଥର ଖାଇ ଥାନ୍ତି । ସଜନାଶାଗ, ଅନ୍ୟାନ୍ୟ ଶାଗ, ବାଇଗଣ, ସାରୁ ଏଠାରେ ଅତି ପରିଚିତ ପରିବା । ଏହାବୋଲି ସମସ୍ତଙ୍କୁ ସବୁଦିନ ମିଳେ ନାହିଁ । ବାଡ଼ିଘରେ ଯାହା ହୁଏ, ଯେତିକି ଦିନ ଯାଏ । ଚାଉଳ ଖୁଦମିଶା ସୋରିଷ ଲୁଖୁରି ଲୁଖୁରି ଫୁଟାଇ ତରକାରି ଖାଇଥାନ୍ତି । ଏ ଗ୍ରାମରେ ଖାଇବା ଓ ଲଗାଇବାରେ ତେଲ ମଧ୍ୟରେ ଜଡ଼ାମିଶା ଘେଦେଇ, ନଲଞ୍ଜି, ମାଘି ସୋରିଷତେଲ ପେଜୁଆ ପେଜୁଆ କଳା ବଟିବଟି ଦେଖା-ଯାଉଥିବ, ସେଥିରୁ ଜନ ସଂଖ୍ୟା ପ୍ରାୟ ଛଅଶହ ଜଣକୁ ବର୍ଷ ଯାକରେ ପଞ୍ଚସ୍ତରୀ ଟଙ୍କାର ଖର୍ଚ୍ଚ ହେଉଥିବା ହିସାବ କରାଯାଇଛି । ତେଲସେର ପାଞ୍ଚସିକା ନହେଲେ ଦେଢ଼ ଟଙ୍କା । ମାସକୁ ଗୋଟିଏ ସେରରୁ ବେଶୀ ତେଲ: ଏଥିରେ ଛଅଶହ ଜଣ ଚଳିପାନ୍ତି । କେତେ ଯେ ନଖୁରି ଥାନ୍ତି—ମୁଣ୍ଡରେ ଉକୁଣୀ ଲିଖ ଫୁଟି ପଡୁଥାନ୍ତି ।

'ଘିଅ ଆଣିଥିଲି ଅଢ଼େଇଏ
ଗୁଡ଼ ଆଣିଥିଲି ସଢ଼େଇଏ
ଚାଉଳ ଲୁଟିଲି ମାଣେ
ଛକୋଡି କଲି
ନକୋଡି କଲି
ଲୁଲା ପୋଛଙ୍କର ଦକୋଡି କଲି
ଭାଇ ବେହେରଙ୍କୁ ଯୋଡି ପିଠା ଦେଲି
ମୁଁ ଭାଇ ଖାଇ ରଙ୍କୁଣି ନୁହେଁ
ଯେ ମାରେ ତାକୁ ହତାଏ ଦଏ ।'

ଏହି ହିସାବରେ ଏଠାର ନର ନାରୀ ଜୀବିକା ଚଳାନ୍ତି । ସବୁ କଥାରେ କହନ୍ତି—ପ୍ରଭୁ ଯାହା କରିବେ । ଏଠା ପ୍ରଭୁଙ୍କ ବାସସ୍ଥଳୀ ଆଗେ ଭାଗବତ ଘରେ ଥିଲି । ଖୋଳ ଝାଞ୍ଜ ବଜାଇ ଓଡ଼ିଶି କୀର୍ତ୍ତନ କରି ଯାଉଥିଲା । ଗାଁ ଗଛମୂଳ ଗୀତାବଳୀ ଠାକୁରାଣୀ ଉଭା ହୋଇ ଗାଁ ଦୁଃଖ ସୁଖ ବୁଝୁଥିଲେ । ଗାଁ ଲୋକେ ଏବେ କହନ୍ତି ଉମ୍ଭମ ଉମ୍ଭମ କୋରି ମହାପ୍ରସାଦ ତାଙ୍କୁ ଠାକୁରାଣୀ କେତେଥର ଦେଇଛନ୍ତି । ହେଲେ ଗଲା ଛପନ ସନରେ କାଳସି ପୋଖତା ଛୁଆଁରେ ଭେଗ ଚାଉଳ ଛୁଇଁକରି ଦେଲା ତ କି ଜର ହେଲା ପଞ୍ଚ ପଞ୍ଚ ଦିମାସରେ ମରିଗଲା । ଭାଗବତ ଘରକୁ ଏବେ ଲୋକେ ପଶୁରନ୍ତି ନାହିଁ, ଉଇଲଗା ଭଙ୍ଗା ଖୋଳ କେତୋଟା ଭଙ୍ଗା କାନ୍ଥରେ ଏବେ ମଧ୍ୟ ଲଟକି ରହିଛି । କୋଠରେ ଗହ୍ନେ ପଶୁଣେ ଥିଲା । ଗାଁ ଉଠିବାଠି ଜମିନେଇ ଦି ଦାଳଆ ହେଇ ଯିବାରୁ ସେତକ ନେତାଙ୍କ ଗର୍ଭରେ ପଶିଗଲା ।

ଅଳ୍ପତା ଖୁରରେ ଭଣ୍ଡାରି ମାସେ ପନ୍ଦର ଦିନରେ ବାଳ ଛିଅର କରେ । ଗାଁ ଭଣ୍ଡାରି ପୁଅକୁ ଫେସନ ବାଳକଟା ଜଣାଥିଲି । ସେ କଲିକତା ଯାଇ ଶିଖିଥିଲି । କିନ୍ତୁ ସେ ଏବେ ଏଠି ନାହିଁ । କଟକରେ କେଉଁ ମାଇକନାଁ ଓଭିଲ ପାଖରେ ଚାକିରି କରି ରହିଛି । କିଏ କିଏ କହୁଛନ୍ତି ଯେ ଝୋକାଟା ଟିକିଏ ଦେଖାନ୍ତା ସୁନ୍ଦର ନାଁ, ଖୀରସ୍ତାନ ମାଇକିନାଁ ଲେଭେଇ ରଖି ନେଲି ।

ଗାଁରେ ଦୁଇଶରୁ ଊର୍ଦ୍ଧ୍ୱ ବଳଦ, ଗାଈ, ବାଛୁରି ଅଛନ୍ତି । ମଣିଷଙ୍କ ରୂପ ଯାଥିଲା ଗାଈ ବାଛୁରିଙ୍କ ରୂପ ତଦ୍ରୂପ । ଗୋଟିଏ ଲୋକ ଏ ସମସ୍ତଙ୍କୁ ଚରାଏ । ଗୋଚର ବୋଲି ବର୍ଷା ଦିନରେ ଶତମାଣ ଭୂଇ-ମାଣର ଠେଙ୍ଗା ଖଣ୍ଡେ ଅଛି—ସେଇଠି ଆଗୁଳା ହୋଇ ଆସନ୍ତି । ଫସଲ ଉଠିଲେ ବିଲ ବାଡରେ ମୁହଁ ମାରନ୍ତି ମାଟି ଶୁଙ୍ଘିବାକୁ । ଚମଡ଼ା, ହାଡ ସମସ୍ତଙ୍କଠାରେ ଅଛି, ଅତି ଚମତ୍କାର ଭାବରେ । ବର୍ଷରେ ପାଞ୍ଚସେର ଦୁଧ ଦୁହାଁ ହୁଏ କି ନାହିଁ ଗାଁ ସାରା ଗାଈଙ୍କଠାରୁ ।

ଖମ୍ବଆଳୁ, ସଜନା ଛୁଇଁ, କଦଳୀ କାନ୍ଧି କେବେ କପର କାହା ବାଡରେ ହୁଏ । କିନ୍ତୁ ତାହା ବାବୁ ଭାୟାଙ୍କ ପାଟିକୁ ବିନା ମୂଲ୍ୟରେ ଆଗେ ଯେପରି ଅତ୍ୟାଚାର ଯୋଗୁଁ ଯାଉଥିଲା, ଏବେ କଅଁଳ ବ୍ୟବହାର ମଧ୍ୟରେ ମଧ୍ୟ ସେପରି ଚାଲି ଯାଉଛି ।

ଶୀତଦିନେ ମୁଣ୍ଡରୁ ପାଦ ଘୋଡ଼େଇହୋଇ ଲୋକେ ଶୁଅନ୍ତି । ଦୋସିଆଁ ଖଦି ଚାଦର ଚଳାଚଳ ଲୋକଙ୍କର ଖଣ୍ଡେ ଅଧେ ଥାଏ । ଗାଁରୁ ହାଟ ରାସ୍ତାରେ ରାଜପଥକୁ ଲୋକେ ଆସନ୍ତି । ଅସ୍ୱାସ୍ଥ୍ୟକର ଘର, କୁଖାଦ୍ୟ ଅତି ନୀଚସ୍ତରରେ ମଣିଷ ଜୀବନ କପର ଥାଏ—ଏଥିରୁ ସାଧାରଣ ଅବସ୍ଥା ଧରି ହେବ । ଅବଶ୍ୟ ପଙ୍କଜପୁର ନିମ୍ନ ପ୍ରାଇମେରିରେ ଯାଇ ଏଠାରୁ ପାଞ୍ଚ ପଚିଶି ପିଲା ପାଠ ପଢ଼ନ୍ତି । ହାଇ-ସ୍କୁଲରେ ଜଣେ ଅଧେ ପିଲା ପଢ଼ନ୍ତି । କିନ୍ତୁ ସେମାନେ ଗାଁକୁ ଫେରିଲେ ଯଥା ପୂର୍ବଂ ତଥା ପରଂ । ମୋତେ ଯେତେ ମାଠିରୁ ମାଠ, ମୁଇଁ ସେଇ ଦରପୋଡ଼ା କାଠ ।

କାଳୀଦାସ ଲେଖିଥିଲେ ଚନ୍ଦ୍ରରେ ଥିବା ଏକମାତ୍ର କଳଙ୍କ କେହି ଦୃଷ୍ଟିକୁ ଆଣନ୍ତି ନାହିଁ । କାରଣ ତାର ସ୍ନିଗ୍ଧ କିରଣରେ ସେ ଦୋଷ କୁଆଡ଼େ ଲୁଚିଯାଏ ।

କିନ୍ତୁ ଘଟକର୍ପର ଥଟ୍ଟା କରି ଏହି କଥାର ଉତ୍ତର ଦେଇ ଲେଖି-ଥିଲେ 'କବି କହିଲେ ବହୁଗୁଣ ଭିତରେ ଗୋଟିଏ ଦୋଷଥିଲେ ତେବେ ଦୋଷ ଗୁଣଭିତରେ ଲୁଚିଯାଏ । କେହି ଜାଣି ପାରନ୍ତି ନାହିଁ । କିନ୍ତୁ କବି ଜାଣନ୍ତି ନାହିଁ ଯେ ଗୋଟିଏ ମାତ୍ର ଦରିଦ୍ରତା ଦୋଷରେ ସବୁ ଗୁଣ

ନଷ୍ଟ ହୋଇଯାଏ । ହୁଙ୍କାରେ ସୁଣ ଦେହ ଦେଖନ୍ତି ନାହିଁ ।' ଦାରିଦ୍ର୍ୟ ଦୋଷେ ସୁଣସ୍ପର୍ଶି ନାଶି ।

ଏଥର କଣ୍ଠା ପଦର ଗାଁର ଏକ ଚଳପଣ ଘରଟିକୁ ଏ ଯାଇ ଦେଖି ଆସିବା । ବାବୁ ପଧାନେ କାଣରେ ଚଷା, ବରଷକ ଭାତ ଖାଆନ୍ତି । ଦାଣ୍ଡପାଖେ ଦି ବଖରା ଫଳ ଘର । ବଖରାକେ ହୁଡ଼ା ବଳଦ ହଳେ ଠେଲୁଛନ୍ତି । ବଦ-ଳେଇବେ ବଦଳେଇବେ ହୋଇ ଦି ବରଷ ପୂର୍ଣି ମାଇଲେଣି । ଆର ବଖରାରେ ଭୁଇଁରେ ଓଳିଆ ବର, ଭଙ୍ଗା କଣା ଢୋଲ ଦଂଠା, ଛିଣ୍ଡା ବସ୍ତା କେତେଖଣ୍ଡ, ଭଙ୍ଗା ଲଙ୍ଗଳ, ପଇ, ଦାଣ୍ଡିଆ କେତେଖଣ୍ଡ, ମୂଷାମାଟି ଜପାଝାଟି ହୋଇ ପଡ଼ିଛି । ଭିଏ ଅତିଥି ଅଭ୍ୟାଗତ ଆସିଲେ ସେଇଠି ଟିକିଏ ଜାଗା ଅଛି ରହନ୍ତି, ଶୁଅନ୍ତି । ଚୂଲିଟିଏ ଅଛି—ବ୍ରାହ୍ମଣ ଗୋସେଇଁ ଆସିଲେ ଦିମୁଣ୍ଡା ଭାତ ଫୁଟାଇ ଖାଇବାକୁ ।

ପଧାନଙ୍କର ହଳେ ପେଡ଼ିଲୁଗା । ତାଙ୍କ ସ୍ତ୍ରୀରିକାଙ୍କର ଦି ଖଣ୍ଡ ବସ୍ତା କଣାଦନ୍ତି ଲୁଗା ପଡ଼ି ରହିଛି । ମାଟିର ଡବ କେତୋଟା ଅଛି । ଲଣ୍ଠନଟିଏ ପଧାନଙ୍କର ସଉକ । ସେ ସଞ୍ଜରେ ତିନି ଚାରିଥର ପୋଛନ୍ତି । ତାହା ଥରକୁ ଥର କଳା ପଡ଼ିଯାଏ । ସନେଇ ସାହୁ କାଣ୍ଡି ଡିବ୍ବିସିନ ଆଣେ ଜାଲ ବହନ୍ତର ପିବାକୁ । କିନ୍ତୁ ଦର ଧଳା କିରସିନଠୁ ଚଢ଼ା ।

ପଧାନଙ୍କର ବଡ଼ ସମ୍ପତ୍ତି ପିତଳ ଗରା ଯୋଡ଼େ । କଂସାବାସନ ଦଶ ପନ୍ଦର ଖଣ୍ଡ ଅଛି । ନଅଙ୍କିଆ ଥାଳିର ଓଜନ ଦୁଇସେର ହେବ ।

ପଧାନିଆଣିଙ୍କର ନାକରେ ବସଣୀ, କାନରେ ନୋଳି, ମଲ୍‌କଡ଼ି, ଫାସିଆ, ବେକରେ ଅଧଭରିକର ଚେରୁ କଣ୍ଠି ମାଳଟିଏ । କଳା ବଟି ବଟି ସୂତାରେ ରଙ୍ଗେଇ କଣ୍ଠି ସାଥିରେ ଗୁନ୍ଥାହୋଇ ସେ ଦହକ ଗଲାଣି । ବସଣି, ନୋଳି, ଫାସିଆ, କଣ୍ଠି-ସୁନାରେ କଳା କଳା ମଳି ଯଉ ପଡ଼ି ଠାଣ ହୋଇ କୋଉକାଳୁ ରହିଲାଣି । ହାତରେ ମୁଠେ ମୁଠେ କାଚ । କାଚ ସାଙ୍ଗକୁ ବନ୍ଧୁରିଆ କଡ଼ୁରିଆ ରୁପା ଖଡୁ । ପଧାନିଆଣି ଓଡ଼ଶା ପାଞ୍ଚଗଡ଼ର ଝିଅ । ନହେଲେ ତାଙ୍କ ଶାଶୂ ପିତଳ ଖଡୁ ବାହୁ ଛବଶ ଛବଶ ଫୁଲର ଲଗେଇ ଦହକ କଟେଇ ଥିଲେ । ପଧାନିଆଣିଙ୍କର ନଖରେ ଜନ୍ମଦନ୍ତି

ମଳ ଢଳାବୃତ୍ତ ମୂର୍ତ୍ତି ହୋଇ ଲାଗି ରହୁଛି । କାମ ଦାମରେ ନଖ ଛିଣ୍ଡି ଯିବାରୁ ସେଣକ ଶୁଦ୍ଧ ହୁଏ । ଗୋଡରେ କଂସା ପାହୁଡ଼ ବ ହୁଳ । କାମ ଖାଟି ଖାଟି ପାଦର ଅଙ୍ଗୁଠି ବଙ୍କା ହୋଇ ଗଲାଣି । ଯମ ଛାଡ଼ି ପାରିବ ନାହିଁ ବୋଲି ଦେହ ତମାମ ଚିତା କୁଟେଇଛନ୍ତି । ଶାଶୂ ଶ୍ୱଶୁର ନଥିବାରୁ ଯା ଯେଉଲା ନଥିବାରୁ ପଧାନଆଣି ଗାଁରେ ସୁଝୀ ଯେପରି ସେପରି ଗେଲବସର । ଢଳପାଖ ଢଂବଖବ ଆଠୁ ଘରେ ସେ ସାଆନ୍ତାଣି ।

ଭାତ ସନ୍ଧ୍ୟାର ପେଜ ଗାଳି ଦେଲା ପରେ ଥଣ୍ଡା ପାଣିରେ ଭିଜୁଆଣି ଦେଇ ଉସୁମ ଉସୁମ ଭାତ, ପଧାନ ବଉଁଶ ଖାଆନ୍ତି । ସବୁଦିନ ତରକାରି ଠାଏ । ଶାଗ ମୁଗ ଯାହା ଯେଉଁ ରୁତୁରେ ମିଳିଲା । କଂସା ଥାଳିଆରେ ଲୁଣ ପଗତେ, ଲଙ୍କାମରିଚ ଗୋଟାକରୁ ଗଡ଼େ ହେଲେ ପଧାନେ କଂସେ ଭାତ ଖାଇଦେବେ । ପଧାନଆଣିଙ୍କର ପିତାଶୁଖୁଆ ଲାଞ୍ଜ ଟିକିଏ ହେଲେ ଭାତ ଉଠିଲା । ଅମୃତ ମଣ୍ଡା, କଦଳୀ, ଭଣ୍ଡା, କଦଳୀ ମଞ୍ଜା, ତାଙ୍କଘରେ ପଶେ ନାହିଁ । ଶୁଣା ଯାଉଛି ବର୍ଷରେ ଦୁ ଦୁଇଦିନ କେବେ କମିଶ ବଲେଇଣାଆନ୍ତୁ ପୋଡ଼କର ପିଲେ ଖାନ୍ତି । ପଧାନଙ୍କର ପିଲାଝିଲା ଦେଖନ୍ତେ । ଗାଁ ଚଟଶାଳୀରେ ପିଲେ ପଢ଼ନ୍ତି । ତାଙ୍କର ଆଶା ଅଛି ସେ ପିଲାଙ୍କୁ ବଡ଼ ଇସ୍କୁଲରେ ପଢ଼େଇବେ ।

ତାଙ୍କ ବାପ ବଡ଼ ପୁଣ୍ୟାତ୍ମା ଭଲ ଲୋକଥିଲେ । କିନ୍ତୁ ତାଙ୍କ ମଡ଼ା କେବେ ପୋଡ଼ିଲା ନାହିଁ । ଶେଷକୁ ଗାଁର ମଡ଼ା ଟାଣିଆ କାମରେ ଧୁରନ୍ଧର ରଥୁ ସେନା ଟାଙ୍ଗିଆରେ ହାଣି ଗଡ ଗଡ଼ କରି ପୋଡ଼ିଲା । ତେବେ ମଧ୍ୟ ରଇରେ ଲୋକେ ମୁର୍ଦ୍ଦାର ଛାଡ଼ି ଆସିଲେ । ଦେଖ ଯେ ସମ ସାଇଁ ଖଚ ମିଛ କହି ଲୋକଙ୍କର ବହୁ ଅନିଷ୍ଟ କରୁଥିଲା । କିନ୍ତୁ ସେ ଘିଅ, ତେଲ, ମାଛ, ଶୁଖୁଆ, ଦହି ଔଖର ଖାଉଥିଲା । ତା ମଡ଼ା ପରି ରଇରେ ଥୋଉ ଥୋଉ ଜଳିଗଲା । ପଧାନେ କହନ୍ତି ଆମ ଭାଗ୍ୟ । ଲୋକେ କହନ୍ତି ପଧାନ ବୁଢ଼ାଠେଇ ଭିତରେ ଭିତରେ ଛନ୍ଦ ମନ୍ଦ ଥିଲା । ସାଇଁଠା ନିଚ୍ଛନ୍ଦ ବାଲବାଲଟା । ମୁହଁରେ ସିନା କହୁଥିଏ, ହୃଦରେ ତାର କପଟ ନଥିଲା ।

କିନ୍ତୁ ମୂଲ୍ୟବାନ ଝକ୍‌ଝକ ଖାଦ୍ୟ ଖାଇ ଯେ ସ୍ୱାଦର ଲାଭ ମୋଟ-ଗଲା, ଏବେଥା ଏବେ ମଧ୍ୟ ଗାଁରେ କେହି ବିଶ୍ୱାସ କରନ୍ତି ନାହିଁ ।

ପଧାନ ଘର ଗୁରୁବାର ବ୍ରତରେ ଆଉ ଆଉ ଓଷା ଉପାସରେ, ନିତ ବାଇଗା ବସେଇବାରେ ଏ ଗାଁ ଭିତରେ କେବଳ ମାତ୍ର ଘିଅ ସେରେ ହିସାବ ବରଷକେ ଖର୍ଚ୍ଚ କରନ୍ତି । ବାର ମାସରେ ତେର ପର୍ବ ପଧାନଙ୍କ ଘରେ ହୋଇଥାଏ । ଓଖର ବୁଇସେର ହେବ ବର୍ଷରେ ଖର୍ଚ୍ଚ ହୁଏ । ପିଲାଏ ଓଖର ବାରସ୍ୱାଦ ବଇଲେ ଏକୋଇଶା ଯାଏ ପିଅନ୍ତି । ପଧାନଆଣି କହନ୍ତି 'ମଲାମୋର, ଥନ କ୍ଷୀର ତ ପିଲା ଖାଇପାରୁ ନାହିଁ, ଆଉ ମୋର ଲାଗୁଆ ହେଉଛି ? ପଧାନଆଣି ବଲ ଆଉ ଘରଛଡ଼ା ଅଭ ସୁଖ ଆନନ୍ଦ କଣ ଅଛି ଜାଣନ୍ତି ନାହିଁ । ବପହରଟା ଉକୁଣି ମସ୍ତରେ ଯାଏ । ବଳାସ ମଧ୍ୟରେ ପଧାନଆଣିଙ୍କର ଉକୁଣି ଦେଖେଇବା ଏବଂ ପଧାନଙ୍କର ଗୋପୀଲୀଳାରୁ କ, ବ, ଚ କରି କେତେ ଧାଡ଼ି ପଢ଼ିବା ଛଡ଼ା ଆଉ କିଛି ନଥାଏ । ଜର ଆବ ବେମାର ହେଲେ ଗାଁର ବଇଦ ଧଗ ମୂର୍ଖ ବୈଦ୍ୟଠାରୁ ଓଷଦ ଖାନ୍ତି । ଝୋଟ ଶଆର ଅଲୁଆନ ଖଣ୍ଡେ ଶୀତ ଦିନେ ପଧାନେ ଘୋଡ଼େଇ ହୋଇ ଚଳପଛ ଲୋକ ବୋଲି ବାହାରେ ଡିଣ୍ଡା ହୁଅନ୍ତି । ଗୋଟାଏ ନିସ୍ତବ୍ଧ ଅନ୍ଧକାର ମଧ୍ୟରେ ଚେମେଣିଆ ଚଢ଼େଇର ଅବସ୍ଥା ସହିତ ଏହି ସୁଖୀ ପରିବାରକୁ ତୁଳନା କରିବାକୁ ବଡ଼ ଇଚ୍ଛା ହୁଏ । କିନ୍ତୁ ଆମେରିକା ବିଲାତ, ଋଷିଆ ଆଦ ଦେଶରେ ଆମ ବାପୁ ପଧାନଙ୍କ ପରି ଗୋଟିଏ କାଲ୍‌ପନିକ ପରିବାରକୁ ଯାଇ କଣ ଦେଖିବା ?

ଜନ୍ ନିକୋଲାସ ବିଲାତର ଓଡ଼ନପ୍ ଗାଁର ଗୋଟିଏ ସୁଖୀ କୃଷକ । ତାଙ୍କର ସ୍ତ୍ରୀ ମାର୍ଗୋ ନିକୋଲାସ ଏବଂ ପୁଅ ଝିଅ ଦୁଇଟି ମାତ୍ର । ଗ୍ରାମରେ ଶହେ ଘର କୃଷକ ଅଛନ୍ତି । ଗ୍ରାମ ଦାଣ୍ଡ ଶହେ ଫୁଟ ଚଉଡ଼ା-ପିଚ୍ ରାସ୍ତା । ଗାଁ ମୁଣ୍ଡରେ ବିସ୍ତୃତ ଭୂମିରେ ଗୋଟିଏ ହାଇସ୍କୁଲ ଅଛି ।

ଗାଁ ମଝିରେ ମାଇପିମାନେ ପାଠ ପଢ଼ାଉଥିବା ଛୋଟ ଛୋଟ ଇସ୍କୁଲ ତିନି ଚାରି ଗୋଟି ଅଛି । ଗ୍ରାମର ସବୁଘର ପକ୍‌କା । ସବୁଆଡ଼େ ସିମେଣ୍ଟ

ଚଟାଣ । ଧୂଳି ଟିକିଏ କେଉଁଠି ଦେଖିବ ନାହିଁ । ଫସଲର ଅମାର ଘର, ଗାଈ ଗୋରୁଙ୍କ ଗୁହାଳ ଘର ସ୍ୱତନ୍ତ୍ର ସ୍ଥାନରେ ପରିଷ୍କାରରେ ରହିଅଛି । ଗାଁର ଗିର୍ଜାଘର ବା ମନ୍ଦିର ଅତି ପରିଷ୍କାର ଏବଂ ଦେଖିବାକୁ ଏକାନ୍ତ ସୁନ୍ଦର । ପାଖରେ ଏକ ପୋଖରୀ । ତା ପାଖକୁ ଲାଗି ଗୋଟିଏ ପାର୍କ ଅଛି । ପାର୍କଟିରେ ଫୁଲଗଛମାନ ସଜାହୋଇ ଲାଗିଛି । ଚଉକି, ବେଞ୍ଚମାନ ସେଠାରେ ପଡ଼ିଛି ଯେ ସକାଳ ସନ୍ଧ୍ୟା ଅପରାହ୍ଣର ସମୟରେ ଅବସର ବିନୋଦନ ଲାଗି ସ୍ତ୍ରୀ ପୁରୁଷ, ଭାଇ ଭଉଣୀ, ବନ୍ଧୁ ବାନ୍ଧବୀ—ମାନେ ସେଠି ବିହାର କରି ମନ ଆନନ୍ଦ କରୁଛନ୍ତି ।

ଗ୍ରାମରେ ଡାକ୍ତରଖାନା ଅଛି । ଗୋଟିଏ ପୁସ୍ତକାଳୟ ଅଛି । ପାଣିକଳ ଓ ବିଜୁଳି ଆଲୁଅ, ରାସ୍ତା ଘାଟ—ଘର ଦୁଆର ସବୁଆଡ଼େ ରହିଅଛି ।

ଜନ୍ ଏବଂ ଜନ୍‌ଙ୍କର ସ୍ତ୍ରୀ ବଡ଼ ପରିଶ୍ରମୀ । ସକାଳୁ ଉଠି ନିଜେ ଖାଇ ଏବଂ ପିଲାମାନଙ୍କୁ ସ୍ନା, ବିସ୍କୁଟ ଆଦି ଖୁଆଇ ନିଜ ନିଜ କାର୍ଯ୍ୟରେ ଲାଗି ଯାନ୍ତି । ଜନ୍ କ୍ଷେତକୁ ଯାନ୍ତି । ମାର୍ଗୋ ଘର କାମରେ ଲାଗିଯାନ୍ତି । ବେଳେ ବେଳେ ମଧ୍ୟ ସ୍ୱାମୀଙ୍କର ପରିଶ୍ରମ ଲଘୁ କରିବା ଲାଗି କ୍ଷେତକୁ ମାର୍ଗୋ ଯାଇ ଫେରି ଆସନ୍ତି । ମାର୍ଗୋ ଅତ୍ୟନ୍ତ ରୁପବତୀ, ଦେହରେ କେଉଁଠି ଗହଣା ଆଦୌ ନାହିଁ । ବେଳେ ବେଳେ ହାତରେ କାଚ, କାନରେ କାନଫୁଲ, ବେକରେ ହାର ଲଗାନ୍ତି । ମୁଣ୍ଡରେ ମୁକୁଟ ପିନ୍ଧନ୍ତି- ଯାହା ଉତ୍ସବ ଦିନରେ । କିନ୍ତୁ ସବୁଦିନେ ଖାଲି ଦେହ । ଏକାବେଳେ ପରିଷ୍କାର । ଟିକିଏ ମଳି ଦେଖିବ ନାହିଁ । ହସ ହସ ମୁହଁ ସବୁବେଳେ ଶଙ୍ଖ କୁଣ୍ଢେଇ ପରି । ଗୋଡରେ ଯୋତା । ପିନ୍ଧନ୍ତି ଦିନରେ ଦୁଇ ପାଞ୍ଚ-ଥର ସଫା ଏବଂ ସୁନ୍ଦର ସୁନ୍ଦର ଗାଉନ୍ । ମୁଣ୍ଡବାଳ ଢାଳ ଦୁଇଥର କୁଣ୍ଡାନ୍ତି । ଘରେ ବିରାଟ ଦର୍ପଣ ଅଛି । ଭଲକି ଭଲ ପାନିଆଁ । ଜନ୍ କ୍ଷେତରୁ ଫେରି ଆସି ମାର୍ଗୋଙ୍କୁ କୁଣ୍ଢାଇ ଧରି ଚୁମ୍ବନ ଦିଅନ୍ତି । ତାଙ୍କର ସମସ୍ତ ପରିଶ୍ରମର କ୍ଳାନ୍ତି ଦୂର ହୋଇଯାଏ । ମାର୍ଗୋ ସ୍ୱାମୀଙ୍କୁ ବଦଳରେ ଚୁମ୍ବନ ଦେଇ ସାରି ଘରେ ଖାଇ ପିଇ ଶାନ୍ତିରେ ବିଶ୍ରାମ କରନ୍ତି ।

ପିଲାମାନେ ସ୍କୁଲରୁ ଫେରିଲେ ପିତା ମାତାଙ୍କୁ ଚୁମ୍ବନ ଦିଅନ୍ତି ଏବଂ ପିତାମାତାଙ୍କଠାରୁ ମଧ୍ୟ ଚୁମ୍ବନ ଲାଭ କରନ୍ତି ।

ତାଙ୍କଘରେ ପଲଙ୍କ ସୁନ୍ଦର ଅଛି । ସବୁ ପିଲାଙ୍କର ଗଦି ଶେଯ ମଖମଲ ଚଦର, କୋମଳ ତକିଆମାନ, ମଶାରି ଧୋବ ଫର ଫର ହୋଇ ସଜା ହୋଇଥାଏ । ପଲଙ୍କରେ ସ୍ପ୍ରିଂ ଲାଗି ଥିବାରୁ ଶୋଇଲେ ବଡ଼ କୋମଳ ଲାଗେ । ଘର କାନ୍ଥରେ ଜନ୍‌ଙ୍କର ପିତା, ମାତା, ଭାଇ, ଭଉଣୀ ଆଦି ଆତ୍ମୀୟମାନଙ୍କ ଫଟୋ ଟଙ୍ଗା ରହିଛି । ତା ଛଡ଼ା ଜନ୍‌ଙ୍କର ପିଲାଦିନରୁ ଆଜିଯାଏ ଅନେକ ଭଳିର ଫଟୋ ରହିଛି । ମାର୍ଗୋଙ୍କର ଯୁବତୀ ବେଳର ଛବିକୁ ଜନ୍ ରଙ୍ଗ କରି ଘରେ ରଖିଛନ୍ତି । ଦେଖିଲେ ମନରୁ ଶୋକ ଦୁଃଖ ଦୂର ହୋଇଯିବ । ପୁଅ ଝିଅ ଦୁହିଁଙ୍କର କେତେଭଳି ଫଟୋ କାନ୍ଥରେ ମରା ଯାଇଛି । ଘରର ବଡ଼ ବଡ଼ ଝରକା ଖୋଲିଦେଲେ ଘରଯାକ ପବନ ଏବଂ ଆଲୁଅ ପୂରିଯାଏ । ଗାଧୁଆଘର, ପାଇଖାନା, ଅତି ପରିଷ୍କାର ପରିଚ୍ଛନ୍ନ ଥାଏ ।

ରୋଷେଇ ଘର ଅତି ଚମତ୍କାର । ଥାଳି ବାସନ ଡେକ୍‌ଚିମାନ ଭଳିକି ଭଳି ଅଲମିରାରେ ଥୁଆ ହୋଇଛି । ବିଜୁଳି ଆଲୁଅର ଚୁଲିରେ ଜନ୍ କେତେବେଳେ ବା ମାର୍ଗୋ କେତେବେଳେ ରୋଷେଇ ଘଣ୍ଟାକ ମଧ୍ୟରେ ସାରି ଦିଅନ୍ତି । ଖାଆନ୍ତି ଟେବୁଲ ଉପରେ ଧୋବ ଫର ଫର ଚଦର ବିଛେଇ । କ୍ଲବକୁ, ସିନେମାକୁ, ସଭାସମିତିକୁ ଏବଂ ପାଠାଗାର ଆଦିକୁ ଯିବାଦିନ ବଜାରରୁ ଖାଦ୍ୟ କିଣି ମଧ୍ୟ ଖାଇ ଦିଅନ୍ତି । ରବିବାରରେ ଗୀର୍ଜାକୁ ଯାନ୍ତି । ଗାଁର ହୋଟେଲମାନଙ୍କର ଖାଦ୍ୟ ବିଶୁଦ୍ଧ ଏବଂ ସ୍ୱାସ୍ଥ୍ୟର ଅନୁକୂଳ । ଘରତଳରେ ସେଓ, ନାସପାତି ଆଦି ନାନା ଦେଶର ଫଳ ସଜାହୋଇ ରହିଥାଏ ।

ମାର୍ଗୋ ନିଜେ ଗାଈ ଦୁହନ୍ତି ମେସିନ ସାହାଯ୍ୟରେ । ତାଙ୍କର ଗାଈ ଦୁଇଟି ଦିନରେ ପନ୍ଦର ସେରରୁ କୋଡ଼ିଏ ସେର ଦୁଧ ଦେଇଥାନ୍ତି । ଘରର ଯାବତ କାମ ମାର୍ଗୋ ଏପରି ଭାବରେ କରନ୍ତି—ଯାହାକି ଆମ ଦେଶର କଣେ ମୂଲିଆଣି ମଧ୍ୟ କରି ପାରିବ ନାହିଁ । ହେଲେହେଁ ତାଙ୍କୁ

ଯୁନ୍ଦରପଣ ସବୁବେଳେ ସମାନ ରହିଥାଏ । ଜନ ଟ୍ରାକ୍ଟର ଚଳାଇ ସେଥିରେ ଫସଲ ବୁଣା କଟା ଅମଳ ସବୁ କରନ୍ତି । ସ୍ୱଶରୁ ସବୁ ଫସଲ ଅଦାୟ ହୁଏ । ସେ ଦେଶରେ ମସଲା କହିଲେ ଭାରତରୁ ଯାଉଥିବା ଗୋଲମରିଚକୁ ବୁଝାଏ । ତା ଛଡ଼ା ଲୁଣ ଦେଇ ସିଝାମାଂସ, ଅଣ୍ଡା, କୋବି ଟମାଟୋ ସେମାନେ ଖାଉଥାନ୍ତି ।

ତାଙ୍କର ପୁଅ ଝିଅ ସତେଜ ଇନ୍ଦୁ ଇନ୍ଦିରା । ପାଠ ପଢ଼ାରେ ଖୁବ୍ ମନ । ଝିଅଟି ବଡ଼ । ଏବର୍ଷ ସେ ସହରରେ ଯାଇ କଲେଜରେ ପଢ଼ିବ । ଗାଁରେ ଗ୍ରହରେ ବଲ୍‌ଡ୍ରାନସିଂ-ଯୋଡ଼ ନାଚ ହେଲେ ପିଲାଙ୍କୁ ଧାଇ ଜାମା ଦେଇ ଜନ ଏବଂ ମାର୍ଗୋ ନାଚ ଯାନ୍ତି । ମାର୍ଗୋଙ୍କ ସୁନ୍ଦର ପଣରୁ ତାଙ୍କୁ ଧରି ନାଚିବାକୁ ଗାଁର ଅନେକ ମରଦ ବଡ଼ ଆକୁଳ ହୁଅନ୍ତି । (ଏହା ଶୁଣି ଆମ ଦଳବେହେରା ମୁହଁ ଶୁଖାଇବେଣି ଏବଂ କହିବେଣି ଅନାସୃଷ୍ଟି କଥା ସବୁଡ଼ାକ । କିନ୍ତୁ ଆମର ରାସଲୀଳା, ଆଦିବାସିଙ୍କ ନାଚ ଆଉ କଣ ନୁହେଁ । ରାସଲୀଳା ପଢ଼ିଲେ ସ୍ୱର୍ଗକୁ ଯିବାକୁ ହୁଏ ନାହିଁ । ତଦ୍ଦ୍ୱାରା କାମନାକୁ ଜୟ କରାଯାଏ) । ଜନ୍‌ଙ୍କ ଘରେ ପିଆନୋ ବାଜା ଅଛି । ସମସ୍ତେ ଗୀତ ଗାଇ ଜାଣନ୍ତି । ତା' ଛଡ଼ା ରେଡିଓ, ଫୋନ ଆଦି ସବୁ ସୁବିଧା ରହିଅଛି ।

ଘରେ ପ୍ରତ୍ୟହ ମାଛ ମାଂସ, ରୁଟି, ଲହୁଣି, କୋବି, ଅଣ୍ଡା, ଟମାଟୋ ଆଦି ଏବଂ ନାନା ଜାତିର ଫଳ ଖିଆହୁଏ । ଗାଁରେ ସିନେମା ଥିଏଟର ଅଛି । ଜନଙ୍କର ମଟରଟିଏ ଅଛି । ସେମାନେ ଅନେକ ସମୟରେ ସହର ଏବଂ ସମୁଦ୍ର କୂଳ ଆଦି ବଣନ୍ଦ ସ୍ଥାନକୁ ବୁଲି ଯାନ୍ତି-ସପରିବାରରେ । ପିଲେ ମଧ୍ୟ ମଟର ନେଇ ବୁଲିଯାନ୍ତି । ଗାଁରେ ରୋଗ ଡକାଇତ କଣ ସେଠି ଜଣାନାହିଁ । ମଶା, ମାଛିଙ୍କ ଉପଦ୍ରବ ନାହିଁ । ସବୁଆଡ଼େ ହସ ହସ ମୁହିଁ । ମାଡ଼ ଫଉଜଦାରି, ବଦମାସୀ, ହିଂସା ତାଣ୍ଡବ ଆଦୌ ନାହିଁ କହିଲେ ଚଳେ । ଝିଅମାନେ ସମ୍ପୂର୍ଣ୍ଣ ସ୍ୱାଧୀନା । କିନ୍ତୁ ଏହା ବୋଲି ପିତାମାତାଙ୍କର ଅବାଧ୍ୟ ନୁହନ୍ତି । ବର୍ଷରେ ଏତେ ପୂଜା ପାର୍ବଣ ଆମପରି ନାହିଁ । ଗୋଲ, ଅଫିମ ସେ ଦେଶରେ ମୂଳରୁ ଚଳେ ନାହିଁ ।

କେହି କେହି ଶୀତ ଏବଂ ପରିଶ୍ରମରୁ ରକ୍ଷା ପାଇବାକୁ ଲଘୁ ମଦ୍ୟ ପାନ କରନ୍ତି । କିନ୍ତୁ ମାର୍ଗୋ କିନ୍‌ଙ୍କ ଆଦୌ ମଦ ଛୁଇଁବାକୁ ଦେଇ ନାହାନ୍ତି । ମଦ ଖାଇ ମାତାଲ ହେବା ସେ ଅଞ୍ଚଳରେ କେବେହେଲେ ଦେଖାଯାଏ ନାହିଁ । ଦେଶର ପ୍ରତିଲୋକଙ୍କୁ ଆଦର ସ୍ନେହ କରିବା, ଦେଶପାଇଁ ସର୍ବସ୍ୱ ଦେବାକୁ କିନ୍‌ଙ୍କ ପରିବାର ସବୁବେଳେ ପ୍ରତିଜ୍ଞା କରିଥାନ୍ତି ।

ଖବର କାଗଜ କିନ ଏବଂ ମାର୍ଗୋ ନିୟମିତ ପଢ଼ି ଦେଶର ହାଲ ଖବର ଜାଣନ୍ତି । ତାଙ୍କର ପିଲେ ମଧ୍ୟ ଖବର କାଗଜ ପଢି ପୃଥିବୀ କଥା ଜାଣନ୍ତି ଏବଂ କାହାକୁ ଭୋଟଦେଲେ ସେ ରାଜ୍ୟର ଉପକାର କରି ପାରିବ ତାକୁ ବୁଝି ବିଚାରି ଭୋଟ ଦେଇଥାନ୍ତି । ମାର୍ଗୋ କାହାକୁ ଭୋଟ ଦେଲେ, କିନ ମଧ୍ୟ ଆଉ କାହାକୁ ଦେଇଥାନ୍ତି । ସେମାନେ କାହା ପ୍ରଲୋଭନରେ ପଡ଼, କଥାରେ ମାତି ଭୋଟ ଦେବା କଥା ତାଙ୍କ ହୃଦୟରେ ଥରଟିଲାଗି ଉଠି ନାହିଁ । ଦେଶଟା ଯେ ତାଙ୍କର ଏ କଥା ସେମାନେ କେବେ ଭୁଲି ନଥାନ୍ତି ।

କିନ୍‌ଙ୍କ ଗାଁର ସାଧାରଣ ଚରିତ୍ର କେତେ ସାଧୁ ଓ ସୁନ୍ଦର ତାହା ଏହି ଗଳ୍ପଟିରୁ ଜଣାପଡିବ । ଥରେ ଜଣେ ମନୋହରି ଦୋକାନୀ ଲଣ୍ଡନ ସହରରୁ ତାଙ୍କ ଗାଁର ଏକ ମେଳା ମହୋତ୍ସବକୁ ଆସିଥିଲା । ସେ ତାର ଦୋକାନଟିକୁ ବଡ଼ ଯତ୍ନରେ ସଜାଇ ପ୍ରତି ଜିନିଷର ମୂଲ୍ୟ ପ୍ରତି ଜିନିଷରେ ଲେଖି ଦେଇଥିଲା । ସେ ଦିନଟିଏ କାରବାର କରିଛି କି ନାହିଁ ତାକୁ ଗହଣୀ ଝାଡ଼ା ବେମାର ଧଇଲା । ସେ ଦୋକାନ ଛାଡି ଡାକ୍ତର ଖାନାକୁ ଚାଲିଗଲା । ସେ ଏପରି ଅବସ୍ଥାରେ ଗଲା ଯେ ତାର ଦୋକାନ ପୂର୍ବପରି ଖୋଲା ରହିଲା । ଲୋକେ ତାର ଜିନିଷ ନେଇ ଯେଉଁଠି ଯେଉଁ ଜିନିଷ ରହିଥିଲା ସେଇଠି ପଇସା ରଖିଦେଇ ଯାଉଥାନ୍ତି । ତାର ଜିନିଷମାନ ଏବଂ ପଇସା ଦଶ ବାରଦିନ କାଳ ମେଳାରେ ପଡିଥାଏ । କିନ୍ତୁ ସେଥିରୁ ଗୋଟିଏ ଜିନିଷ କି ଗୋଟିଏ ମୁଦ୍ରା କେହିହେଲେ ନେଇନ୍ତି ନାହିଁ । ଫଳରେ ଦୋକାନ ସୁସ୍ଥ ହୋଇସାରି ତାର ପଇସା ଏବଂ ଅବଶିଷ୍ଟ ଜିନିଷ ନେଇ ପାରିଥିଲା ।

ସେ ଗ୍ରାମରେ ସ୍ତ୍ରୀଙ୍କୁ ବଳତ୍କାର କରିବାକୁ କାହାର କ୍ଷମତା ନାହିଁ । ତା'ହେଲେ ଅତି ଭୟାନକ ଦଣ୍ଡ ଭୋଗ ପାଇଥାନ୍ତି ।

କୃଷକ ଜନ୍ ପରି ଆମ ଓଡ଼ିଆ ପୃଥ୍ବୀରେ ଯେ କେତେକ ନାହାନ୍ତି ତା ନୁହେଁ; କିନ୍ତୁ ଏଠାରେ ସେହିପରି ଯେଉଁମାନେ ଅଛନ୍ତି ସେମାନେ ନିଜ ସୁଖ କେବଳ ଖୋଜିବାରେ ଯୁଗ ଯୁଗ ବ୍ୟସ୍ତ ଅଛନ୍ତି । ପରର ହିତ ବା ଦେଶର ହିତ କଥା ଆମର ଏଠା ଜନ୍‌ମାନେ ଭୁଲି ଯାଇଛନ୍ତି । କିନ୍ତୁ ସେଠା ମଫସଲର ଜନ୍ ନିକୋଲ୍‌ସ୍ ତାର ଜୀବନକୁ ଅଳସୁଆ ନ କରି ତାର ଜୀବନକୁ ଯେପରି ସୁଖରେ ଚଳାଇଛି, ସଦ୍ ବ୍ୟବହାର, ସ୍ନେହ, ସହାନୁଭୂତି, ସଚ୍ଚରିତ୍ରତା, ଭଦ୍ରତାରେ ଯେପରି ଦେଶର ଉପକାର କରୁଛି, ତାହା ଏ ଦେଶକୁ ଏବେ ମଧ୍ୟ ସ୍ୱପ୍ନରେ ଆସିନାହିଁ ।

ଆମ ବାବୁ ପଧାନ ଏବଂ ଜନ୍ ନିକୋଲ୍‌ସ ପୃଥିବୀର ଦୁଇଟି ଏଡ଼ା କୃଷକ ହେଲେହେଁ ଜଣେ କିପରି ସ୍ୱର୍ଗ ସୁଖରେ ଅଛି ଏବଂ ଅନ୍ୟଟି କିପରି ନରକ ଯନ୍ତ୍ରଣା ଭୋଗୁଛି ତାହା ବିଚାରିଲେ ସଫା ଜଣା ଯାଇ ପାରିବ ।

ଆମ ଦେଶର ସୁଖୀ ପରିବାରଙ୍କ କଥା ଭାବି ଆମେ ଗପ୍ପ ଦେଉଁ ଯେ ତାହା ସେମାନଙ୍କର ପୂର୍ବ କର୍ମ ଫଳ । ପୂର୍ବ ଜନ୍ମର ସୁକୃତ । କିନ୍ତୁ ତା କେବେ ନୁହେଁ । ସେଇଥିପାଇଁ ଆମର ପତନ । ଆମର ଦୁଃଖ କାଣ ତେଣୁ ତାହା ଆମେ ସମର୍ଥିପାରୁ ନାହୁଁ ।

ସବୁ କଥାତ ଲେଖି ହେବ ନାହିଁ । ଏହି ଦୁଇଟି ତୁଳନାରୁ ପୃଥିବୀର ଅନ୍ୟ ଅଡ଼ର ଚାଷୀଏ ଏବଂ ଆମ ଏଠାର ଧନୀ ଜମିଦାର, ବାବୁ ଭାୟା ଲୋକେ କି ସୁଖରେ ଅଛନ୍ତି ଏବଂ ଆମେ କି ଦୁଃଖରେ ନିରନ୍ତର ରହି ସଢ଼ୁଥାଏଁ ତାହା ସହଜରେ ଜଣାଯାଇ ପାଇବ ।

ସେମାନେ ଯେ ଆମପରି କେବେ ନ ଥିଲେ ବା ଏବେ ବଳିତ ଆମେରିକାରେ କୋଣ କୋଉଁଠି ଅତି ଦୁଃଖ ମଧ୍ୟରେ ନାହାନ୍ତି ଏହା କେହି ନ ଭାବନ୍ତୁ । ସେମାନେ ଆମଠୁ ଅତି ଦୁଃଖ ପୂର୍ବେ ଭୋଗୁଥିଲେ । ରୁଷିଆର ଲୋକେ ୨୫ । ୨୬ ବର୍ଷତଳେ ଅତି ଦୁଃଖରେ କାଳ କଟାଉ

ଥିଲେ । ଅନେକ ଲୋକେ ଏଇ ଦୁଇ ତିନି ବର୍ଷ ତଳେ ବଡ଼ କଷ୍ଟ ଭୋଗୁଥିଲେ । କିନ୍ତୁ ସେ ସବୁ ରାଜ୍ୟରେ ଏବେ ଦୁଃଖ ତ ଦୁଃଖ ମଣାଟିଏ କି ମାଛିଟିଏ ମଧ୍ୟ ଦେଖା ଯାଉ ନାହାନ୍ତି ।

ମଣିଷ ନିଜ ଚେଷ୍ଟାରେ ସ୍ୱର୍ଗ ଗଢ଼ି ପାରୁଛି । ଏଥିରେ କଉଁ ଦେବତା, ଈଶ୍ୱର, ଜିଶ୍ୱର, ପଣ୍ଡା, ପୁରୋହିତ, ସାଧୁ ମହନ୍ତ, ଜ୍ୟୋତିଷ ବ୍ରାହ୍ମଣ, ପୂର୍ବଜନ୍ମ ପରଜନ୍ମର କିଛି କରିବାର ନାହିଁ । ଯେଉଁମାନେ ମଙ୍ଗଳ କରୁଛନ୍ତି ବୋଲି ଏବେ ଆମକୁ ଲୁହା ଯାଉଛି, ସେଇମାନେ ଅମ ଅମଙ୍ଗଳର କାରଣ । ଏହି ଜୁଡିଆଣି ଜାଲରୁ ଆମେ ଉପର ଉଦ୍ଧାର ପାଇ ଖାଇ ପିଇ ସୁଖରେ ଚଳିବା ଏହି ହେବ ଆମର ଲକ୍ଷ୍ୟ । ଯେଉଁ ଗ୍ରାମରେ ଘର କରି ରହିବା ସେଠାରେ ପ୍ରତି ପରିବାରକୁ ଯେପରି ପାଞ୍ଚ ଦଶଗୁଣ ରହିବାର ମିଳିବ । ଘର ଖଣ୍ଡି ମାନ ଅଗ୍ନି ଭୟରେ ଯେପରି ନଷ୍ଟ ନ ହୁଏ, ପିଇବାକୁ ବିଶୁଦ୍ଧ ପାଣି ସହଜରେ ଯେପରି ଆମକୁ ମିଳିବ, ଗାଧୋଇବାକୁ, କାରବାର କରିବାକୁ ଜଳ ଯେପରି ଆମେ ଅକ୍ଳେଶରେ ପାଇବା, ସଫାବସ୍ତ୍ର ପିନ୍ଧିବାକୁ ମିଳିବ; ଉତ୍ତମ ଶଯ୍ୟା, ପାଇଖାନା, ଡାକ୍ତରଖାନା, ଇସ୍କୁଲ ଆଦି ଯାହା ମିଳିଲେ ଆମେ ସଭ୍ୟତା ଲାଭ କରିବା; ତାହା ଯେପରି ଆମକୁ ସହଜରେ ମିଳିବ । ସବୁ ଉପରେ ଉତ୍ତମ ଖାଦ୍ୟ । ଏବଂ ଅବଶ୍ୟକ ଜମି ବା ବ୍ୟବସାୟ ।

ସରକାରଙ୍କୁ କେବଳ ଦୋଷ ଦେଇ ଅଲଗା ରହିଗଲେ ଏମାନ ଆମକୁ ମିଳିବ ନାହିଁ । ଶରୀରତତ୍ତ୍ୱ, ବ୍ରହ୍ମାଣ୍ଡ ଭୂଗୋଳ, ଗୀତା ଭାଗବତ ପଢ଼ି ଆମର ଏ ଦୁଃଖ ଦୂର ହେବ ନାହିଁ । ଶରୀର ଯାହାର ନାହିଁ ସେ କି ଧର୍ମ କରିବ । ଧାର୍ମିକ, ଧର୍ମ ଏ ସବୁଙ୍କୁ କହିବାକୁ ହେବ—ଟିକିଏ ଘୁଞ୍ଚି ଯାଅ । ଏ ଦଗରେ ନିଜେ ନିଜ ଲାଗି, ସମସ୍ତେ ଗ୍ରାମ ଲାଗି, ଗ୍ରାମମାନ ଦେଶ ଲାଗି ଚେଷ୍ଟା ନ କଲେ ଆମର ଆସ୍ତେ ଆସ୍ତେ ମୃତ୍ୟୁ ହୋଇଯିବ । ହଜାର ହଜାର ବର୍ଷ ମଧ୍ୟର ଭାଷଣ ଶୁଣି ଶୁଣି ଆମେ କ୍ଷୟ ପାଇ ଗଲୁ । ଏଥିପାଇଁ ଆମକୁ ଅମ ହୃଦୟରେ ଅଶାନ୍ତିର ନିଆଁ ଜାଳିବାକୁ ହେବ ।

ସହରମାନଙ୍କରେ କେତୋଟି ବିଶ୍ୱ ବିଦ୍ୟାଳୟ ବା କଲେଜ, ସ୍କୁଲ ସ୍ଥାପିତ ହେଲେ ଭାରତୀୟ ସଂସ୍କୃତି ଓ ସଭ୍ୟତାର ବିକାଶ ହେଲା ବୋଲି ବୁଝାଯାଇ ନପାରେ । ଭାରତ ଗ୍ରାମବହୁଳ ଦେଶ । ଗାଁ ଗଣ୍ଡାର ଜନ ସାଧାରଣଙ୍କ ବିକାଶହିଁ ଦେଶର ବିକାଶ । ସେମାନଙ୍କ ଶିକ୍ଷା ସଂସ୍କୃତିର ଉନ୍ନତି ପ୍ରତି ସର୍ବାଦୌ ଦୃଷ୍ଟି ଦିଆଯିବା ଉଚିତ ।

ଚନ୍ଦ୍ରପୁର, ୧୭ । ୨ । ୫୫ — ସର୍ଦ୍ଦାର କେ. ଏମ୍. ପାଣିକର ।

# ଅନ୍ଧାରି ମୁଲକ

ଦ୍ୱିତୀୟ ଖଣ୍ଡ—ଆମ ଶାସନ ବିଧାନ ଏବଂ ଭୋଟ
ତୃତୀୟ ଖଣ୍ଡ—ଆମ ମହାଜନ ଏବଂ ଗୃହ ବାସ
ଚତୁର୍ଥ ଖଣ୍ଡ—ଆମ ନେତା ଏବଂ ପାଠ ଶାଠ
ପଞ୍ଚମ ଖଣ୍ଡ—ଆମ ପରିବାର ଏବଂ ନାରୀ
ଷଷ୍ଠ ଖଣ୍ଡ—ଆମ ସମାଜ ଏବଂ ହରିଜନ
ସପ୍ତମ ଖଣ୍ଡ—ଆମ ସହର ଏବଂ ଗାଁ ଗଣ୍ଡା
ଅଷ୍ଟମ ଖଣ୍ଡ—ଆମ ଈଶ୍ୱର ଏବଂ ଦେଉଳ ଅଟ୍ଟାଳି
ନବମ ଖଣ୍ଡ—ଆମ ବାବୁ ସାହେବ ଏବଂ ହଳିଆ ମୂଲିଆ
ଦଶମ ଖଣ୍ଡ—ଆମ ଭୋଜନ ଏବଂ ବାସଘର
ଏକାଦଶ ଖଣ୍ଡ—ଆମ ପ୍ରଦେଶ ଏବଂ ପୃଥିବୀ
ଦ୍ୱାଦଶ ଖଣ୍ଡ—ଆମ ବିଗ୍ରହ ଏବଂ ବିପ୍ଳବ ।

**ପ୍ରେମସୁନ୍ଦର ସ୍ମୃତି ପାଠାଗାର**
ନରସିଂହପୁର, ପୋ: ଅ: କଟକ